# ଉପହାର ।

ଶ୍ରୀ ........................................................ ଙ୍କ

କରକମଳରେ ମୋହର ହୃଦୟର ଗଭୀର .................... ର

ନିଦର୍ଶନସ୍ୱରୂପ

**ଭୁବନେଶ୍ୱର**

ପୁସ୍ତକଖଣ୍ଡି

ଅର୍ପଣ କଲି ।

ଶ୍ରୀ ..................................................

ମୋର

ପରମାରାଧ୍ୟ

ପିତୃଦେବ ମହୋଦୟଙ୍କ

ଶ୍ରୀଚରଣତଳେ

ଏ କ୍ଷୁଦ୍ର ପୁସ୍ତକ

ଉତ୍ସର୍ଗ କଲି ।

ଚିନ୍ତାମଣି ।

# ସୂଚୀପତ୍ର ।



## ପରିଶିଷ୍ଟ ।

# ଚିତ୍ର ସୂଚୀ ।

# ଭୁବନେଶ୍ୱର ।

## ପୂର୍ବକଥା ।

ଓଡ଼ିଶାର ଭୂତପୂର୍ବ କମିଶନର ଉତ୍କଳବନ୍ଧୁ ଟି. ଇ, ରେଭେନ୍‌ସା ସାହେବ ମହୋଦୟ ସନ ୧୯୧୦ ମସିହାରେ ଭାରତ ସରକାରଙ୍କ ହାତରେ ଏକସହସ୍ର ମୁଦ୍ରା ପ୍ରଦାନ କରି କଟକ ରେଭେନ୍‌ସା କଲେଜିଏଟ୍ ସ୍କୁଲ ଓ ରେଭେନ୍‌ସା ବାଳିକା ସ୍କୁଲର ହିତାର୍ଥେ ବ୍ୟୟିତ ହେବାର ଇଚ୍ଛା ପ୍ରକାଶ କରିଥିଲେ । ଦାତାଙ୍କ ଇଚ୍ଛା ଅନୁସାରେ ସେ ଟଙ୍କାର ସୁଧରୁ ପ୍ରତିବର୍ଷ ଦୁଇଟି ପୁରସ୍କାର ଦିଆଯିବାର ସ୍ଥିର ହୋଇଅଛି । ପ୍ରଥମବର୍ଷ—୧୯୧୦ ମସିହାରେ ମୁଁ ସେତେବେଳେ କଲେଜିଏଟ୍ ସ୍କୁଲର ଦ୍ୱିତୀୟ ଶ୍ରେଣୀର ଛାତ୍ର; ଦିନେ ବିଜ୍ଞାପନ ଦିଆଗଲା—"କାଲି ରେଭେନ୍‌ସା ପୁରସ୍କାର ଲାଗି ପରୀକ୍ଷା ଗୃହୀତ ହେବ ।" ଯଥା ସମୟରେ ଆମ୍ଭେମାନେ ପରୀକ୍ଷା ଗୃହରେ ଉପସ୍ଥିତ । ପ୍ରଧାନ ଶିକ୍ଷକ ମହାଶୟ ବୋର୍ଡରେ ଲେଖିଦେଲେ—"ଭୁବନେଶ୍ୱର ଯାତ୍ରା" ବିଷୟରେ ପ୍ରବନ୍ଧ ଲେଖ । ପ୍ରବନ୍ଧର ବିଷୟ ଦେଖି—

'ବେପଥୁଶ୍ଚ ଶରୀରେ ମେ ରୋମହର୍ଷଶ୍ଚ ଜାୟତେ'—ମୋର ଏବମ୍ଭୂତ ଅବସ୍ଥା, ସେଦିନଯାଏ ମୋର ଜ୍ଞାନ କଟକ ସହର ମଧ୍ୟରେ ସୀମାବଦ୍ଧ । ଭୁବନେଶ୍ୱର ମୋ ନିକଟରେ ସ୍ୱପ୍ନାଗତ ରାଜ୍ୟ । 'ଭୁବନେଶ୍ୱର ଯାତ୍ରା' ବିଷୟରେ ପ୍ରବନ୍ଧ ଲେଖିବା ମୋ ପକ୍ଷରେ ରଣଯାତ୍ରା ପରି ହୋଇ ଉଠିଲା; ତଥାପି ସମର ଭୂମିରେ ପୃଷ୍ଠଭଙ୍ଗ ଦେବା କାପୁରୁଷତା । ତିନିଘଣ୍ଟା ମଧ୍ୟରେ ଦଶପୃଷ୍ଠାବ୍ୟାପୀ ଖଣ୍ଡିଏ ଗୁରକୋଣିଆ ଖାତା ଶେଷ କରି ଶିକ୍ଷକ ମହାଶୟଙ୍କୁ ଦେଇ ନିଷ୍କୃତି ଲଭ କଲି । ପରୀକ୍ଷାର ଉତ୍ତର ଖାତା ଦେବା ସଙ୍ଗେ ସଙ୍ଗେ ଫଳ ମୁଁ ସ୍ୱୟଂ ଜାଣି ପାରିଥିଲି; ସୁତରାଂ ସେ ବିଷୟରେ ମୋର ଅଦୌ ଉତ୍କଣ୍ଠା ନ ଥାଏ । ଖାତାଗୁଡ଼ିକ ତତ୍କାଳୀନ ଓଡିଶା ସ୍କୁଲସମୂହର ଇନ୍‌ସପେକ୍‌ଟର ରାୟ ମଧୁସୂଦନ ରାଓ ବାହାଦୁର ମହୋଦୟଙ୍କ ନିକଟ ଗଲା;

ତହିଁ ପରଦିନ ପୁଣି ଦେଖିଲି, ଜଣେ ଚପରାଶି ଖାତା ନେଇ ଫେରି ଆସିଲା
ଆମ୍ଭେମାନେ ଭାବିଲୁଁ, ରାତିକ ମଧ୍ୟରେ ଖାତା ଦେଖା ଶେଷ ହୋଇଅଛି ।
ଯେଉଁ ଛାତ୍ରମାନେ ପୁରସ୍କାର ପ୍ରାପ୍ତିରେ ଆଶାନ୍ୱିତ ଥିଲେ, ସେମାନେ
ବିଦ୍ୟାଳୟର କିରାଣୀବାବୁଙ୍କ ଠାରୁ ଯାଇ ବୁଝି ଆସିଲେ—ମଧୁବାବୁ ଲେଖି
ପଠାଇ ଅଛନ୍ତି ଯେ, କଲେଜିଏଟ୍ ସ୍କୁଲର କେତେକ ଛାତ୍ରଙ୍କୁ ସେ ଚିହ୍ନନ୍ତି;
ସେ ପରିଚୟ ତାଙ୍କର ପରୀକ୍ଷକ-ବୃତ୍ତିର ପ୍ରତି ପ୍ରତିବନ୍ଧକ ହୋଇ ପାରେ;
ସୁତରାଂ ନାମ ଗୁଡ଼ିକ ଲୁଚାଇ ଦେଇ ଖାତା ପଠାଇ ଦେଲେ ସେ ଦେଖି
ଦେବେ । ସେ ଅନୁସାରେ ଖାତା ପଠାଗଲା । ପନ୍ଦର ଦିନ ପରେ ଖାତାମାନ
ଦେଖା ହୋଇ ଆସିଲା । ମୁଁ ପୁରସ୍କାର ପ୍ରାପ୍ତିର ଉପଯୁକ୍ତ ବିବେଚିତ ହୋଇ
ଥିବାର ପ୍ରଧାନଶିକ୍ଷକ ମହାଶୟ ଘୋଷଣା କଲେ ।

ସେ ଦିନ ମୁଁ ପ୍ରତିଜ୍ଞା କରିଥିଲି—ଏ ପ୍ରକାର ଫାଙ୍କି ଦେଇ ପୁରସ୍କାର
ପାଇବାର ପ୍ରାୟଶ୍ଚିତ୍ତ—ଶୀଘ୍ର ଭୁବନେଶ୍ୱର ଦେଖିବା । 'ଭୁବନେଶ୍ୱର ଯାତ୍ରା'
ପ୍ରବନ୍ଧ ଲେଖି ପୁରସ୍କାର ପାଇଲା ପରେ ମୁଁ ସର୍ବ ପ୍ରଥମେ ଭୁବନେଶ୍ୱର ଦର୍ଶନ
କଲି । ପ୍ରଥମେ ଯେଉଁ ଦିନ ଭୁବନେଶ୍ୱରର ସୁଷମା ମୋର ଦୃଷ୍ଟିଗୋଚର
ହେଲା, ସେ ଦିନର ଆନନ୍ଦ ଓ ଉତ୍ସାହ ଏ ଜୀବନରେ ଚିରସ୍ମରଣୀୟ ।
ସେହି ଦିନ ପ୍ରତିଜ୍ଞା କରିଥିଲି—ଭୁବନେଶ୍ୱର ବିଷୟରେ ଗୋଟିଏ ସୁଦୀର୍ଘ
ପ୍ରବନ୍ଧ ଲେଖିବି । ଏଥି ମଧ୍ୟରେ ଯେତେ ଥର ଭୁବନେଶ୍ୱର ଦେଖିଅଛି, ସେ
ପ୍ରତିଜ୍ଞା ଦୃଢ଼ୀଭୂତ ହୋଇଅଛି, ଯେତେ ଥର ଭୁବନେଶ୍ୱର ମୋର ଦୃଷ୍ଟିଗୋଚର
ହୋଇଅଛି, ସେତେ ଥର ତାହା ମୋ ସମ୍ମୁଖରେ 'ଦୃଷ୍ଟପୂର୍ବ ହୋଇ
ଅଦୃଷ୍ଟ, ପ୍ରଶାନ୍ତ, ସୁନ୍ଦର ପଣର ଚିରନୂତନ ଗୀତ'—ଏହି ଭାବ ପ୍ରକାଶ କରିଅଛି ।

ବହୁବର୍ଷ ପରେ ଶ୍ରୀଯୁକ୍ତ ହିନ୍ଦୋଳ ରାଜାବାହାଦୂରଙ୍କର ଓ ଉତ୍କଳ
ସାହିତ୍ୟ ସମାଜର ଅନୁଗ୍ରହରୁ ସେ ପ୍ରତିଜ୍ଞା ପୂରଣ କରିବାର ସୁଯୋଗ ଲାଭ
କରି ଥିବାରୁ ଲେଖକ ସେମାନଙ୍କ ନିକଟରେ କୃତଜ୍ଞତା ପାଶରେ ଆବଦ୍ଧ ।
ଭୁବନେଶ୍ୱର ଯଥାର୍ଥରେ ଭୁବନ ମଧ୍ୟରେ ଈଶ୍ୱର; ଯେଉଁ ଦିନ ହିନ୍ଦୋଳର
ସାହିତ୍ୟାନୁରାଗୀ ରାଜାବାହାଦୂର ଉତ୍କଳ ସାହିତ୍ୟ ସମାଜର ସଭାପତି ଆସନରୁ

ଉତ୍କଳର ଇତିହାସ ଅନ୍ୱେଷଣା ଲାଗି ପୁରସ୍କାର ଘୋଷଣା କଲେ, ସେହି ଦିନ ସେ ମହୋଦୟ ଯଥାର୍ଥରେ ଉତ୍କଳର ପ୍ରତ୍ନତତ୍ତ୍ୱ ଭଣ୍ଡାରର ଦ୍ୱାର ଉଦ୍‌ଘାଟନ କରି ଦେଇଅଛନ୍ତି । ଭୁବନେଶ୍ୱର ସେହି ଅସୀମ ପ୍ରତ୍ନତତ୍ତ୍ୱ ଭଣ୍ଡାରର ଗୋଟିଏ ପ୍ରକୋଷ୍ଠ ମାତ୍ର ।

ଶ୍ରୀଯୁକ୍ତ ଗୁରୁଦାସ ସରକାର ପ୍ରଣୀତ 'ମନ୍ଦିର କଥା' ପୁସ୍ତକର ଭୂମିକାରେ ବଙ୍ଗ ସୁଧୀ ଶ୍ରୀଯୁକ୍ତ ଅବନୀନ୍ଦ୍ରନାଥ ଠାକୁର ମହାଶୟ ଯଥାର୍ଥରେ ଲେଖିଅଛନ୍ତି—"ଏ ମନ୍ଦିରଟା ଏତ ଦିନେର, ଓଟା ଅମୁକ ରାଜା ଅମୁକ ସନେ, ଅମୁକ ଯୁଦ୍ଧେର ପର ଭେଙ୍ଗେ ଛିଲେନ୍ ବା ସ୍ଥାପନ କରେଛିଲେନ୍, ଶୁଧୁ ଏଇ ସବ ଜାନ୍‌ଲେଇ ମନ୍ଦିରେର ସବ୍ କଥା ଜାନା ହଲ ନା, ଏ ଦେଶେର ପ୍ରାଚୀନ ମନ୍ଦିରେର ଶିଳ୍ପିଦେର ନାମ ଶିଳାଲିପିତେଓ ନାଇ, ତାମ୍ରଶାସନେଓ ନାଇ; ଯାରା ଗଡ଼ଲେ ତାଦେର ନାମ ପର୍ଯ୍ୟନ୍ତ ରଇଲ ନା, ରଇଲ କେବଲ ତାଦେର, ଯାରା ମନ୍ଦିର ଗଡ଼ାଲେ ଓ ଭାଙ୍ଗାଲେ; ମନ୍ଦିରେର କଥା କୋନୋଦିନ ସମ୍ପୂର୍ଣ୍ଣ ହବେ ନା, ଯତଦିନ ନା ରୀତିମତ ସନ୍ଧାନ କରେ ଯାରା ଗଡ଼ଲେ ତାଦେର ଏକଟା ଉଦ୍ଦେଶ୍ୟ ପାବାର ଆମାରା ଚେଷ୍ଟା କରି ।

ଏ କଥା ଏକେବାରେ ଠିକ ଯେ ଇନ୍ଦ୍ରସଭାଥେକେ ବିଶ୍ୱକର୍ମା ଏସେ ଏଦେଶେର ଏକଟିଓ ମନ୍ଦିର ଗଡ଼େନ୍‌ନି; ବ୍ରହ୍ମାଓ ଏସେ ଦେବତା ପ୍ରତିଷ୍ଠିତ କରେ ଯାନ୍‌ନି; ଯା କିଛୁ କରେଛେ ଏଇ ଦେଶେର ମାନୁଷଇ କରେଛେ । ସେଇ ସବ୍ ମାନୁଷେର ମତ ମାନୁଷ ଯାଦେର ନାମ ନେଇ, କିନ୍ତୁ କାଜଗୁଲୋ ରୟେଗେଛେ ତାରା ପାଷାଣେର ଅକ୍ଷରେ କି କଥା ବଲତେ ଚେୟେଛିଲ, ମନ୍ଦିରଗୁଲୋର ଇତିକଥାର ସଙ୍ଗେ ସଙ୍ଗେ ସେ କଥାଟାଓ ଯୁଡ଼େ ଦେଖଲେ ତବେଇ ସବ୍‌ଦିକ୍ ପୂରୋପୂରି ହୟେ ଉଠବେ । ମାନୁଷଟିର ସଙ୍ଗେ ସାକ୍ଷାତ୍ ପରିଚୟ ନା କରେ, ମାନୁଷେର କୁଷ୍ଠି ପଡ଼େ କିମ୍ବା ତାର ଜୀବନଚରିତ ପଡ଼େ ମାନୁଷଟାକେ ଯେମନ ଆସଲ ଜାନା ହୟେ ନା, ମନ୍ଦିରଗୁଲୋର ସମ୍ବନ୍ଧେ ତାଇ ଖାଟେ । ଟିଲେର ଶିର୍ଷେ ଯେ ସବ୍ ପାଥର ପ୍ରାଣୋନ୍ ତାଦେର ପୂରୋପୂରି ବୁଝତେ ଗେଲେ, ଶୁଧୁ ଇତିହାସ ଓ ପ୍ରତ୍ନତତ୍ତ୍ୱ ଦିକ୍ ଦିଏ

ଦେଖତେ ଗେଲେତୋ ଚଲତେ ପାରେ ନା, ଶିଳ୍ପକାର୍ଯ୍ୟ ହିସାବେଓ ଯେଗୁଲି କି ସମ୍ବାଦ ଦିଚ୍ଛେ ସେଟା ଜାନା ଦରକାର ହୟେ ପଡ଼େଛେ । ଆଗେକାର କାରିଗର ତାଦେର ଚିନ୍ତା ମୂର୍ତ୍ତି ଦିୟେ ଯୁଗ ଯୁଗାନ୍ତରେ ଦାଁଡିୟେ ରୟେଛେ, ଏଖନକାର ଦର୍ଶକ ଆମରା—ଆମାଦେର ଚିନ୍ତା ତାର ସାମନେ ଦାଁଡ଼ାଲୋ; ଏଇ ଦୁଇ ଚିନ୍ତାର ଆଲାପେ ଯେ କଥାଟି ବେରିୟେ ଏଲ ସେଟି ହଲ ଶିଳ୍ପେର; ଆର ମନ୍ଦିରେର କାରୁକାର୍ଯ୍ୟେର ପିଛନେର କଥା ହଚ୍ଛେ ତା ବା ସେଇଟେଇ ମନ୍ଦିରଗୁଲିର ଆସଲ କଥା, ତାଇବା କେ ଜାନେ । ଇତିହାସ, ପୁରାତତ୍ତ୍ୱ, ପ୍ରତ୍ନତତ୍ତ୍ୱ ଏ ସବେର ସଙ୍ଗେ ଆମାର ମନେ ହୟ ମନ୍ଦିରଗୁଲିର ଗୌଣ ସମ୍ବନ୍ଧ, ଆର ଅଚ୍ଛେଦ୍ୟ ମୁଖ୍ୟ ସମ୍ବନ୍ଧ କାରିଗରେର ଗଡ଼ା ଜିନିସ ମାତ୍ରେରଇ ହଲ ଭାବେର ଆର ରସେର ସଙ୍ଗେ; ଏଇ ଜନ୍ୟେ ଏଇ ଦୁଇ ଦିକ୍ ଦିୟେଇ ମନ୍ଦିରଗୁଲିକେ ବୋଝବାର ଚେଷ୍ଟା ଯତଇ ଆମରା କରବ ତତଇ ଆମରା ଆମାଦେର ଦେଶକେ ଠିକ ଚିନେ ନେବାର ସୁବିଧା ପାବ । ଆମାଦେର ଘରେର କଥା, ଦ୍ୱାରେର କଥା, ମନ୍ଦିରେର କଥା, ବିଦେଶୀରା ଯା ଲିଖିଲେ ତାଇ ବେଦବାକ୍ୟ ବଲେ ଧରେ ନିୟେ ଲିପିବଦ୍ଧ କରେ ବସେ ଥାକଲେ ଜିନିସଟା ବିଦେଶୀର ଚୋଖେ କେମନ ପଡ଼େଛେ ତାଇ ଦେଖା ଯାବେ; ନିଜେରା ନିଜେର ଖବର ଦିତେ ସଚେଷ୍ଟଇ ହବ ନା; ସୁତରାଂ ସମ୍ପୂର୍ଣ୍ଣ ହବେ ଆମାଦେର ଯଦି ମନ୍ଦିରେର କଥା ଲିଖତେ ହୟ ତବେ ଆମାଦେରଦିକ୍ ଥେକେ ମନ୍ଦିରଗୁଲିକେ ଜାନା ଓ ଜାନାନୋ ଚାଇ । ଆମାଦେର ମନ୍ଦିର ଆମାଦେର କି କଥା ଜାନାଚ୍ଛେ, ଅନ୍ୟେଦେରଇ ବା କି ବଲଛେ, ଏଇ ଦୁଇଭାଗ ନିୟେଇ ତବେ ମନ୍ଦିରେର କଥା ସମ୍ପୂର୍ଣ୍ଣ ହତେ ପାରେ ।''

ଏହି ଆଦର୍ଶ ସମ୍ମୁଖରେ ରଖି ଆମ୍ଭେମାନେ କି ଇତିହାସ, କି ଶିଳ୍ପ ଉଭୟ ଦିଗରୁ ଭୁବନେଶ୍ୱର ପ୍ରସଙ୍ଗ ଆଲୋଚନା କରିବାରେ ପ୍ରୟାସୀ ହୋଇଅଛୁଁ । ଏଥିରେ ଆମ୍ଭେମାନେ କେତେଦୂର କୃତକାର୍ଯ୍ୟ ହୋଇଅଛୁଁ, ତହିଁର ବିଚାର ପାଠକମାନଙ୍କର ଉପରେ ନ୍ୟସ୍ତ ।

ଭୁବନେଶ୍ୱର ଶିଳ୍ପ ସମ୍ବନ୍ଧରେ ଆଲୋଚନା କରିବାକୁ ଗଲେ ଓଡ଼ିଶାର ତଥା ଭାରତବର୍ଷର ଶିଳ୍ପକଳା ସମ୍ବନ୍ଧରେ କତିପୟ ପ୍ରୟୋଜନୀୟ ବିଷୟ

ଜ୍ଞାତବ୍ୟ; ଭୁବନେଶ୍ୱରର ପ୍ରାଚୀନତାଜ୍ଞାପକ ପୁସ୍ତକମାନଙ୍କର ଆଲୋଚନା ମଧ୍ୟ ଆବଶ୍ୟକ, ଭୁବନେଶ୍ୱରର ଇତିହାସ ସହିତ ଓଡ଼ିଶାର ତଥା ଭାରତର ରାଜନୈତିକ ଓ ଆଧ୍ୟାତ୍ମିକ ଇତିବୃତ୍ତର ଏତେ ସମ୍ପର୍କ ଯେ, ତାହା ମଧ୍ୟ ଭୁଲିବାର ବିଷୟ ନୁହେଁ; ସୁତରାଂ ଭୁବନେଶ୍ୱର ପ୍ରସଙ୍ଗର ଯଥାର୍ଥ ଆଲୋଚନା ପୂର୍ବରୁ ଆମ୍ଭେମାନେ ଏ ପ୍ରସଙ୍ଗମାନ ସମ୍ବନ୍ଧରେ ଆଲୋଚନା କରିବୁଁ । ସଂକ୍ଷେପରେ ଏ ପ୍ରବନ୍ଧର ଉପାଦାନ ସଂଗ୍ରହରେ ଆମ୍ଭେମାନେ ଯେଉଁ ପୁସ୍ତକାଦି ଆଲୋଚନା କରିଅଛୁଁ, ତହିଁର ନିର୍ଘଣ୍ଟ ପ୍ରଦାନ କରିବୁଁ ।

ଏ ପୁସ୍ତକର ବିଷୟମାନ ପ୍ରବନ୍ଧାକାରରେ ଉତ୍କଳ ସାହିତ୍ୟ ସମାଜର 'ହରିବୋଲପୁରସ୍କାର' ଲାଗି ଲିଖିତ ହୋଇଥିଲା । ସେ ପ୍ରବନ୍ଧ ସାହିତ୍ୟ ସମାଜ କର୍ତ୍ତୃକ ପୁରସ୍କାର ପ୍ରାପ୍ତିର ଉପଯୁକ୍ତ ବିବେଚିତ ହୋଇଥିବାରୁ ଲେଖକ ତାହାକୁ ପୁସ୍ତକାକାରରେ ପ୍ରକାଶ କରିବାରେ ପ୍ରୟାସୀ ହୋଇଅଛି ।

ଏ ପୁସ୍ତକ ପ୍ରଣୟନରେ ଲେଖକ ଯେଉଁ ଗ୍ରନ୍ଥମାନଙ୍କରୁ ସାହାଯ୍ୟ ପାଇଅଛି, ତହିଁର ପ୍ରଣେତାମାନଙ୍କ ନିକଟରେ ଲେଖକ ଋଣୀ । ଏତଦ୍‌ବ୍ୟତୀତ ଏ ପୁସ୍ତକର ଉପାଦାନ ସଂଗ୍ରହରେ ଲେଖକ ଯେଉଁମାନଙ୍କଠାରୁ ବିଶେଷ ସାହାଯ୍ୟ ପ୍ରାପ୍ତ ହୋଇଅଛି, ସେମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ଲଛମନ ରାମାନୁଜ ଦାସ, ଭୁବନେଶ୍ୱର ମନ୍ଦିର କମିଟିର ମେନେଜର ଓ ତହସିଲଦାର ଶ୍ରୀଯୁକ୍ତ ଦୀନବନ୍ଧୁ ଦାସ ଓ ଭୁବନେଶ୍ୱରର ଜନୈକ ଶିଳ୍ପୀ ଶ୍ରୀ ଦାମ ମହାରଣା ମାନଙ୍କ ନିକଟରେ ଲେଖକ ବିଶେଷଭାବରେ କୃତଜ୍ଞ ।

ଭୁବନେଶ୍ୱରର ଶିଳ୍ପୀ ଶ୍ରୀ ଦାମ ମହାରଣାଠାରୁ ଆମ୍ଭେମାନେ ଶିଳ୍ପଶାସ୍ତ୍ର ବିଷୟରେ ଖଣ୍ଡେ ତାଳପତ୍ର ପୋଥି ସଂଗ୍ରହ କରିଥିଲୁ; ତାହାର ପ୍ରତିଲିପି ଉତ୍କଳ ସାହିତ୍ୟ ସମାଜର ବ୍ୟୟରେ ସଂରକ୍ଷିତ ହୋଇଅଛି, ସେ ପୋଥି ଅପେକ୍ଷା ଅନ୍ୟତମ ଶିଳ୍ପୀ ଶ୍ରୀ ବୈରାଗୀ ମହାରଣାର ପୋଥିରେ ଅନେକ ଜ୍ଞାତବ୍ୟ ବିଷୟ ଅଛି; ମାତ୍ର ବହୁ ଯତ୍ନସତ୍ତ୍ୱେ ଆମ୍ଭେମାନେ ତାହା ପାଇ ପାରି ନାହୁଁ; କେବଳ ତାହା ଥରେ ଦେଖିବାର ସୁବିଧା ମିଳିଥିଲା ମାତ୍ର । ଶ୍ରୀ ଦାମ ମହାରଣାଠାରୁ ପାଇଥିବା ପୋଥିରୁ ଆମ୍ଭେମାନେ କିୟଦଂଶ ଏ ପୁସ୍ତକରେ ଆବଶ୍ୟକ ମତେ ଗ୍ରହଣ କରିଅଛୁଁ ।

ଲେଖକ ।

# ଭୁବନେଶ୍ୱର

## ପ୍ରଥମ ଅଧ୍ୟାୟ ।

## ଉତ୍କଳଶିଳ୍ପ ।

### ଉତ୍କଳରେ ପଞ୍ଚତୀର୍ଥ ।

କପିଳ ସଂହିତାକାର ଭରଦ୍ୱାଜଙ୍କ ମତରେ ଉତ୍କଳଖଣ୍ଡରେ ଚାରିଗୋଟି ପୁଣ୍ୟତୀର୍ଥ ଅଛି; ଯଥା—ଶଙ୍ଖକ୍ଷେତ୍ର ବା ପୁରୀ, ଅର୍କକ୍ଷେତ୍ର ବା କୋଣାର୍କ, ବିରଜାକ୍ଷେତ୍ର ବା ଯାଜପୁର, ପଦ୍ମକ୍ଷେତ୍ର ବା ଭୁବନେଶ୍ୱର । ପରବର୍ତ୍ତୀ ପୁରାଣ-ଲେଖକମାନଙ୍କ ମଧ୍ୟରୁ କେହି କେହି ବିନାୟକ କ୍ଷେତ୍ର ବା ଦର୍ପଣିର ମହାବିନାୟକ ଓ କେହି କେହି ତୁଳସୀକ୍ଷେତ୍ର ବା କେନ୍ଦ୍ରାପଡ଼ାର ବଳଦେବଙ୍କୁ ଅନ୍ୟତମ ତୀର୍ଥ ବୋଲି ଗଣନା କରି ପଞ୍ଚତୀର୍ଥ ସଂଖ୍ୟା କରିଅଛନ୍ତି । ପଦ୍ମକ୍ଷେତ୍ର ବା ଭୁବନେଶ୍ୱର ପଞ୍ଚତୀର୍ଥ ମଧ୍ୟରେ ପ୍ରାଚୀନତମ ହେଲେହେଁ କପିଳ-ସଂହିତାକାର ବୈଷ୍ଣବଧର୍ମାବଲମ୍ବୀ ଥିବାରୁ ଭୁବନେଶ୍ୱର ନାମ ସର୍ବଶେଷରେ ଉଲ୍ଲେଖ କରିଅଛନ୍ତି ବୋଲି ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ମହାଶୟ ଅନୁମାନ କରିଅଛନ୍ତି; କିନ୍ତୁ ଏ ବିଷୟରେ ମଧ୍ୟ ମତାନ୍ତର ଦେଖାଯାଏ । କେହି କେହି ପୁରୀକୁ ଭୁବନେଶ୍ୱର ଅପେକ୍ଷା ପ୍ରାଚୀନ ବୋଲି ଅନୁମାନ କରିଅଛନ୍ତି; ସୁତରାଂ

ଭୁବନେଶ୍ୱର ।

ଶ୍ରୀକ୍ଷେତ୍ରକୁ ପ୍ରଥମ ସ୍ଥାନ ଦେବା ଅସ୍ୱାଭାବିକ ନୁହେଁ । ଭୁବନେଶ୍ୱରର ପ୍ରାଚୀନତା ସମ୍ବନ୍ଧରେ ଆମ୍ଭେମାନେ ଯଥାସ୍ଥାନରେ ଆଲୋଚନା କରିବୁଁ ।

ପଞ୍ଚତୀର୍ଥ ବିଷୟରେ ମଧ୍ୟ ମତଭେଦ ଅଛି । ତୀର୍ଥ ପଞ୍ଚତତ୍ତ୍ୱ ଓ ବ୍ରହ୍ମପୁରାଣର ରଚୟିତାମାନେ ପଞ୍ଚତୀର୍ଥର ଯେଉଁ ବିବରଣ ପ୍ରଦାନ କରିଅଛନ୍ତି, ତାହା ଉଲ୍ଲିଖିତ ବିବରଣରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ସେମାନଙ୍କ ମତରେ ମାର୍କଣ୍ଡେୟ ହ୍ରଦ, ଅକ୍ଷୟବଟ, କୃଷ୍ଣବଳରାମ, ମହୋଦଧି ଓ ଇନ୍ଦ୍ରଦ୍ୟୁମ୍ନ ଏହାହିଁ ପଞ୍ଚତୀର୍ଥ ।* କିନ୍ତୁ ଉଭୟ ମଧ୍ୟରେ ଅସାମଞ୍ଜସ୍ୟ ନାହିଁ । ଆମ୍ଭମାନଙ୍କ ମତରେ ପ୍ରଥମୋକ୍ତ ତୀର୍ଥମାନ ଉତ୍କଳର ଓ ଦ୍ୱିତୀୟୋକ୍ତ ତୀର୍ଥମାନ ପୁରୀଧାମର ପଞ୍ଚତୀର୍ଥ । କପିଳସଂହିତାବର୍ଣ୍ଣିତ ତୀର୍ଥମାନଙ୍କ ମଧ୍ୟରୁ 'ପଦ୍ମକ୍ଷେତ୍ର' ବା 'ଭୁବନେଶ୍ୱର' ଶୈବକ୍ଷେତ୍ର ।

## ଉତ୍କଳୀୟ ସ୍ଥାପତ୍ୟ ଶିଳ୍ପର ବିଶେଷତ୍ୱ ।

ଜଗତରେ ନାନାବିଧ ଉତ୍ଥାନପତନରେ ମନୁଷ୍ୟର ତଥା ଜାତିର ସର୍ବାଙ୍ଗ ପରିବର୍ତ୍ତନ ସଂଘଟିତ ହୁଏ । ଆଦିମଯୁଗରୁ ଅଦ୍ୟାବଧି ଆମ୍ଭମାନଙ୍କର ଜନ୍ମଭୂମି ଓଡ଼ିଶାର ତଥା ଭାରତଭୂମିର ଇତିହାସ ପର୍ଯ୍ୟାଲୋଚନା କଲେ ଏପ୍ରକାର ଉତ୍ଥାନପତନର ବହୁବିଧ ସ୍ତର ଆମ୍ଭମାନଙ୍କ ଦୃଷ୍ଟିଗୋଚର ହୁଏ । ଏହିପରି ପରିବର୍ତ୍ତନର ପ୍ରତ୍ୟେକ ସ୍ତର ଓଲଟପାଲଟ କଲେ ଆମ୍ଭେମାନେ ବହୁବିଧ ଆଧ୍ୟାତ୍ମିକ, ସାମାଜିକ ଓ ରାଜନୈତିକ ଆବର୍ତ୍ତନର ଚିହ୍ନ ଦେଖୁଁ । ଏହି ଆବର୍ତ୍ତନ ମଧ୍ୟରେ ଭାରତର ବିଭିନ୍ନ ଅଞ୍ଚଳର ଶିଳ୍ପବିଭାଗ ପ୍ରତି ଦୃଷ୍ଟିପାତ

---

* ମାର୍କଣ୍ଡେୟ ବଟେ କୃଷ୍ଣେ ରୌହିଣେୟ ମହୋଦଧୌ ।
ଇନ୍ଦ୍ରଦ୍ୟୁମ୍ନସରଃ ସ୍ନାତ୍ୱା ପୁନର୍ଜନ୍ମ ନ ବିଦ୍ୟତେ । ତୀର୍ଥତତ୍ତ୍ୱମ୍ ।
ମାର୍କଣ୍ଡେୟଂ ବଟଂ କୃଷ୍ଣଂ ରୌହିଣେୟଂ ମହୋଦଧିଂ ।
ଇନ୍ଦ୍ରଦ୍ୟୁମ୍ନ ସରଶ୍ଚୈବ ପଞ୍ଚତୀର୍ଥୀ ବିଧିଃ ସ୍ମୃତଃ । ବ୍ରହ୍ମପୁରାଣ ।

କଲେ ଆମ୍ଭେମାନେ ଦେଖୁଁ, ଭାରତୀୟ ଶିଳ୍ପ ସର୍ବତ୍ର ତାହାର ବିଶେଷତ୍ୱ ହରାଇଅଛି; ହରାଇ ନାହିଁ କେବଳ ଉତ୍କଳଖଣ୍ଡରେ । ଉତ୍କଳୀୟ ଶିଳ୍ପ ତାହାର ସ୍ୱଭାବସିଦ୍ଧ ବିଶେଷତ୍ୱ ଏକାବେଳକେ ଅକ୍ଷୁଣ୍ଣ ରଖି ପାରିଅଛି, ଏହା କହିଲେ ଅବଶ୍ୟ ସତ୍ୟର ଅପଲାପ ହୁଏ; କିନ୍ତୁ ଆମ୍ଭେମାନେ ନିଃସନ୍ଦେହରୂପେ କହି ପାରୁ, ବୈଦେଶିକ ବା ବହିର୍ଜଗତର ପ୍ରଭାବ ଭାରତର ବିଭିନ୍ନ ପ୍ରଦେଶରେ ମଧ୍ୟଯୁଗର ଶିଳ୍ପକଳାକୁ ଯେଉଁ ପରିମାଣରେ ପରିବର୍ତ୍ତିତ କରି ପାରିଅଛି, ଉତ୍କଳୀୟ ଶିଳ୍ପ ଉପରେ ସେ ପ୍ରଭାବ ଅତି ସାମାନ୍ୟ; ପ୍ରାଚୀନ ଯୁଗରୁ ଉତ୍କଳୀୟ ଶିଳ୍ପ ଭାରତୀୟ ଆର୍ଯ୍ୟ ( Indo-Aryan ) ସ୍ଥାପତ୍ୟର ବିଶେଷତ୍ୱ ରକ୍ଷା କରିବାକୁ ସମର୍ଥ ହୋଇଅଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଶ୍ରୀଯୁକ୍ତ ମନୋମୋହନ ଗଙ୍ଗୋପାଧ୍ୟାୟ ମହାଶୟଙ୍କ ମତରେ ଉତ୍କଳୀୟ ଶିଳ୍ପ ଭାରତୀୟ ଶିଳ୍ପ-ଇତିହାସରେ ଯଥାର୍ଥରେ ବିସ୍ମୟୋଦ୍ଦୀପକ । ଅନ୍ୟ କୌଣସି ଜାତି ଯେତେ ସଭ୍ୟ ହୋଇ ପଛକେ, ତାହାର ଶିଳ୍ପ ତାହାର ଭଙ୍ଗୀ (Style) ହରାଇଅଛି, କୌଣସି କୌଣସି ସ୍ଥଳରେ ଏକାବେଳକେ ସେ ପଦ୍ଧତିର ଅସ୍ତିତ୍ୱ ସୁଦ୍ଧା ନାହିଁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କୌଣସି କୌଣସି ସ୍ଥଳରେ ଯାହା ଅଛି, ତାହା ଅନ୍ୟ ଜାତି ବା ଦେଶର ଶିଳ୍ପର ସନ୍ନିବେଶ ବା ସମାବେଶ ଭିନ୍ନ ଅନ୍ୟ କିଛି ନୁହେ । * ଉତ୍କଳୀୟ ଶିଳ୍ପର ଏହି ବିଶେଷତ୍ୱ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ଦୃଷ୍ଟିର ଆଲୋଚନାରେ ପ୍ରବର୍ତ୍ତାଇଅଛି ।

---

* "The Orissan style of Architecture indicates a definite style not hampred by any extraneous influence. That the Orissan sub-group of Indo-Aryan style of Architecture presents a continuous series for a priod of 5 to 6 centuries lends an additional weight to its study and renders it very interesting."

M. M. Ganguli's Orissa and Her Remains, p2.

## ଉତ୍କଳୀୟ ଶିଳ୍ପ ଓ ବୈଦେଶିକ ପ୍ରଭାବ ।

ଅନେକ ସମୟରେ ଆମ୍ଭେମାନେ ଦେଖୁଁ, ପୁସ୍ତକଗତ ଉପଦେଶ କାର୍ଯ୍ୟ କାରିବେଳେ ବିପରୀତ ହୋଇପଡ଼େ; ଏହାକୁ ଯଥାର୍ଥରେ ପରୋପଦେଶେ ପାଣ୍ଡିତ୍ୟଂ ବା Theory and practice ବୋଲାଯାଏ । ଯେଉଁ ପ୍ରତ୍ନତତ୍ତ୍ୱବିତ୍‌ମାନେ ଉପଦେଶ ଦେଇଥାନ୍ତି, କୌଣସି ଦେଶ ବା ଜାତିର ଇତିହାସ ଆଲୋଚନାରେ ନିରପେକ୍ଷତା ଅବଲମ୍ବନ ପ୍ରଧାନ କର୍ତ୍ତବ୍ୟ, ସେହିମାନେ ଅନ୍ୟ ଜାତିର ଲୁପ୍ତ ଗୌରବର ଇତିହାସ ଆଲୋଚନାରେ ପକ୍ଷପାତ ଦୋଷରେ ବିଶେଷ ଦୋଷୀ । ୟୁରୋପୀୟ ପଣ୍ଡିତମାନେ ଅନ୍ୟ ଜାତିର ଲୁପ୍ତ ଗୌରବର ଇତିହାସ ଆଲୋଚନା କରିବାକୁ ଯାଇ ସେ ଗୌରବ ଇଉରୋପର ଶିକ୍ଷା ଦୀକ୍ଷାର ଫଳ ବୋଲି ପ୍ରତିପାଦନ କରିବାରେ ସର୍ବଦା ବ୍ୟସ୍ତ । ଯେଉଁଟା ବାସ୍ତବରେ ଆଖି ଆଗରେ ରହିଅଛି, ତାହାର ଅସ୍ତିତ୍ୱ ଉଡ଼ାଇ ଦେବା ଦୁଃସାଧ୍ୟ; ତେଣୁ ଯାହାର ଭଗ୍ନାବଶେଷ ନାହିଁ, ତାହା କଦାପି ବିଦ୍ୟମାନ ନ ଥିଲା ବୋଲି କହି ପାରିଲେ ବିଦ୍ୟମାନ ବସ୍ତୁର ଅର୍ଦ୍ଧେକ ବି ୟୁରୋପୀୟ ଆଗମନ ଉତ୍ତାରୁ ଏ ଦେଶରେ ଆବିର୍ଭୂତ ବୋଲି ପ୍ରମାଣ କରିବା ସହଜ ହେବ । ଉଦାହରଣସ୍ୱରୂପ ପୁରୀ, ଭୁବନେଶ୍ୱର ଓ କୋଣାର୍କ ମନ୍ଦିର ଓଡ଼ିଆ ଜାତିର ଶିଳ୍ପ-ଗୌରବର ମୂକ ସାକ୍ଷୀରୂପେ ଦଣ୍ଡାୟମାନ; ତାହାର ଅସ୍ତିତ୍ୱ ଉଡ଼ାଇ ଦେବା ୟୁରୋପୀୟ ପଣ୍ଡିତବର୍ଗଙ୍କର ସାଧ୍ୟାତୀତ । ମାତ୍ର ଭାରତର ତଥା ଉତ୍କଳର ଯେଉଁ ସମସ୍ତ ପ୍ରାଚୀନ କୀର୍ତ୍ତି କାଳର କରାଳ କବଳରେ ଲୁପ୍ତ ହୋଇଗଲାଣି, ତାହା କୌଣସି କାଳେ ଭାରତରେ ନ ଥିଲା, ଏହା କହିଦେବା ବଡ଼ ସହଜ । 'ଯଦି ଭାରତରେ ଶିଳ୍ପବିଦ୍ୟା ଥାନ୍ତା, ତେବେ ଭାରତବର୍ଷରେ ତହିଁର ଚିହ୍ନ ଅଦ୍ୟାପି ବିଦ୍ୟମାନ ଥାନ୍ତା । ଯାହାର ଚିହ୍ନ ନାହିଁ, ତାହାର ଜନ୍ମ ନ ଥିଲା; ତାହାର ଜନ୍ମ ହେଲା କେବେ ? ୟୁରୋପୀୟମାନେ ଭାରତବର୍ଷକୁ ଆଗମନ କଲା ପରେ ତାହାର ଜନ୍ମ'— ଏହାହିଁ ସଂକ୍ଷେପରେ କତିପୟ ୟୁରୋପୀୟ ପଣ୍ଡିତଙ୍କର ବିଶ୍ୱାସ ।

ହ୍ବିଲର ସାହେବ ଜଣେ ବଡ଼ ପଣ୍ଡିତ; ତାଙ୍କର ଐତହାସିକ ଗବେଷଣା ମଧ୍ୟ ଊଣା ନୁହେଁ; ସେ ଭାରତ ଇତିହାସ ବୋଲି ପୁସ୍ତକ ମଧ୍ୟ ପ୍ରଣୟନ କରିଅଛନ୍ତି; ସେ ତାଙ୍କର 'ଭାରତ ଇତିହାସ' ପୁସ୍ତକରେ ଲେଖିଲେ, ଦଶରଥ ମହାରାଜାଙ୍କର ଘରର କାନ୍ଥ ଝାଟିମାଟି ଛଟା କାନ୍ଥ ଥିଲା । * ମହାଭାରତ ଯୁଦ୍ଧ ସମୟରେ ପାଣ୍ଡବ ଓ କୌରବପକ୍ଷୀୟ ସେନାମାନଙ୍କ ନିବାସଲାଗି ଯେଉଁ ଦୁର୍ଗ ନିର୍ମିତ ହୋଇଥିଲା, ତାହା ତାଳବରଡ଼ା ଡାଟିବାଡ଼- ଦିଆ, ମାଟିରେ ଲେଶା, ଏହା ହ୍ବିଲର ସାହେବ ଦିବ୍ୟଚକ୍ଷୁରେ ଦେଖି- ଅଛନ୍ତି।* ବିଲାତରେ ତାଳଗଛଗୁଡ଼ିକ ଶ୍ରେଷ୍ଠ ହେଉଛି; ଏ ଦେଶର ତାଳଗଛର ଆକାରପ୍ରକାର ଦେଖି ଏପରି ସିଦ୍ଧାନ୍ତରେ ଉପନୀତ ହେବା ହ୍ବିଲର ସାହେବଙ୍କ ପକ୍ଷରେ ଆଶ୍ଚର୍ଯ୍ୟ ନୁହେଁ । ଯଦି ସେ ସବୁ ଯଥାର୍ଥରେ ଇଟା ପଥରର ହୋଇ- ଥାନ୍ତା, ତେବେ ହ୍ବିଲର ସାହେବଙ୍କ ଇତିହାସ ପ୍ରଣୟନ ଦିନ ପର୍ଯ୍ୟନ୍ତ ଅନ୍ତତଃ ସେ ସବୁ ବିଦ୍ୟମାନ ଥାନ୍ତା । ଅବଶ୍ୟ ହ୍ବିଲର ସାହେବ ଭାରତର

---

* "The wall round the palace of Dasarath was nothing more substantial than a hedge. The palace and fortresses described in the Mahabharat were thatched structures, constructed of mats, bamboos and mud, but devoid of anything in the way of true masonry architecture. Depicting Hastinapur he writes— "A non-descript population, which may have comprised of cultivators, herdsmen, mechanics, retainers, and petty shop-keepers seem to have dwelt in an assemblage of huts or houses, constructed of mats, bamboos, mud, bricks which was dignified in the name of the city."

History of India. Vol. I. P. 43,
and Vol. II. P 9.

କୁବଳେ ନଥିଲେ ।

ଭାଗ୍ୟକୁ ଅନ୍ୟକ କାଳ ଭାରତବର୍ଷ ହିନ୍ଦୁ ତତ୍ତ୍ୱ ଅନେକେ ନୋକ କରିଥିଲେ, ଦଶରଥ
ଏ ନାହାଭାରତରେ ଅଗ୍ନିକୁ ପର୍ଯ୍ୟନ୍ତ ଉଡ଼ାଇ ଦେଇ ପାରୁଥାନ୍ତେ । ଭାରତବର୍ଷର
କପାଳ ବଡ଼ ସଲକ୍ଷ; ତାହାର ଭାଗ୍ୟକୁ ଅଯିଲେ ଫର୍ଗୁସନ ସାହେବ । ସେ ସବୁ
କଥା ଦେଖି ଦେଖି ଠିକଣା କଲେ,—ନା, ଭାରତବର୍ଷର ଲୋକେ ତାଳ-
ପତ୍ରଦ୍ୱାରେ ପ୍ରାସାଦ ନିର୍ମାଣ କରୁଥିଲେ, ଏ କଥା ଠିକ ନୁହେ; କିନ୍ତୁ ପଥର-
ଘର କରିଜାଣି ନ ଥିଲେ; କାଠଘର କରୁଥିଲେ* । ଭାରତବର୍ଷର ସୁନ୍ଦରବନ

---

* It can not be too strongly insisted upon or too often repeated, that stone architecture in India commences with the age of Asoka ( 250 B C ). Not only have we as yet discovered no remains whatever of stone buildings anterior to his reign, but all the earliest caves, either in Bihar or in the Western Ghats, show architecture in the first age of transition from wood to straw."

Tree and Serpent worship by Mr. Ferguson. P 77

" It is a well authenticated example of Dasarath's reign and though cut in the granite rock, every form, every detail is copied from some wooden original, showing that at the time it was executed, stone architecture was unknown in India and men were only beginning to think of a more durable material. From that time we have hundreds of examples in which we see wooden forms gradually being replaced by those more appropriate to stone." Ferguson's Lecture on Indian Architecture. P 9.

"The Indians first learnt this Art from the Bactrian Greeks." History of Architecture Vol. I. P. 17.

ବା ଓଡ଼ିଶା ଗଡ଼ଜାତମାନଙ୍କରେ ବେଶି କାଠ ମିଳେ; ଏହା ଦେଖି ଫର୍ଗୁସନ ସାହେବ ନିଶ୍ଚୟ ଏ ସିଦ୍ଧାନ୍ତ କରିବା ସ୍ୱାଭାବିକ । ତାଙ୍କ ମତରେ ଯେଉଁ ଅଶୋକଙ୍କର କୀର୍ତ୍ତି ସ୍ଥାପନ କରିବାକୁ ମନ ବଳିବା ସଙ୍ଗେ ସଙ୍ଗେ ତେଣୁ ଯୁନାନରୁ ଗ୍ରୀକମାନେ ଆସିଗଲେ; ସେହି ଗ୍ରୀକମାନେ ଭାରତବର୍ଷର ଲୋକଙ୍କୁ ପଥର କାମ, ପଥର କାଟିବା, ପଥର ଖୋଳିବା ଆଦି ସମସ୍ତ ଶିଖାଇଥିଲେ । କିନ୍ତୁ ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ମହାଶୟ ତାଙ୍କ ପ୍ରଣୀତ 'ଇଣ୍ଡୋ-ଏରିୟାନ୍' [ Indo-Aryan ] ନାମକ ଗ୍ରନ୍ଥରେ ଭାରତର ସ୍ଥାପତ୍ୟରେ ଯଥାଯଥ ଉଦାହରଣ ଦେଖାଇ ଏହି ଯୁକ୍ତିର ଅସାରତା ପ୍ରଦର୍ଶନ କଲା ପରେ ଫର୍ଗୁସନ ସାହେବ ଆଉ ଖଣ୍ଡିଏ ବହି ଲେଖିଲେ, ତାହାର ନାମ 'ଆର୍କିଓଲଜି ଇନ୍ ଇଣ୍ଡିଆ' [ Archæology in India ] । ସେଥିରେ ସେ ଲେଖିଛନ୍ତି—"ଆମ କଥାର ପ୍ରକୃତ ଅର୍ଥ ପ୍ରକାଶ କରି ହୋଇ ନାହିଁ । ଭାରତୀୟ ସ୍ଥାପତ୍ୟ ଯେ ସମ୍ପୂର୍ଣ୍ଣ ଦେଶୀୟ ଜିନିଷ, ଏ କଥା ଆମେ ତ ବରାବର କହି ଆସିଅଛୁଁ, ଏଥିରେ ମିଶର, ବ୍ୟାବିଲନ, ଆସିରିଆ, ଗ୍ରୀକ୍ ଅଥବା ରୋମକ ପ୍ରଭାବର ଚିହ୍ନ ମାତ୍ର ନାହିଁ । ତେବେ ଗ୍ରୀକମାନଙ୍କଠାରୁ ଭାରତବାସିମାନେ ଶିଳ୍ପବିଦ୍ୟା ଶିକ୍ଷା କରିଅଛନ୍ତି ସତ; କିନ୍ତୁ ତାକୁ ନିଜସ୍ୱ କରି ନେଇଅଛନ୍ତି ।" [୧] ଏ ଠିକ୍ ସାପ ମରିବ ନାହିଁ, କି ବାଡ଼ି ଭାଙ୍ଗିବ ନାହିଁ ଏହି ଶ୍ରେଣୀର ଯୁକ୍ତି । ଅନେକମାନେ ଏ ପ୍ରସଙ୍ଗର ପାଦଟୀକାରେ ଫର୍ଗୁସନ ସାହେବଙ୍କର ଯେଉଁ ଉକ୍ତିମାନ ଉଦ୍ଧାର କରିଅଛୁଁ, ତାହା ପୁଙ୍ଖାନୁପୁଙ୍ଖ ରୂପେ ପାଠ କଲେ ଆମ୍ଭମାନଙ୍କ କଥାର ସତ୍ୟତା ନିଶ୍ଚୟ ଉପଲବ୍ଧ ହେବ ।

ଡାକ୍ତର ବର୍ଜେସ ( Dr. Burgess ) ପ୍ରମୁଖ ପଣ୍ଡିତମାନେ ଆହୁରି ବଦାନ୍ୟ; ସେମାନେ ଦୟା କରି କହିଲେ, "ହଁ ଆଲେକଜାଣ୍ଡର

[୧] Ferguson's Archæology in India P 9.

ଭାରତବର୍ଷକୁ ଆସିବା ପୂର୍ବରୁ ପଥର କାମ ଭାରତବାସିଙ୍କୁ ଜଣା ଥିଲା; କିନ୍ତୁ ପରେ ପଥର ଜ୍ଞାନ ନ ଥିଲା; କେବଳ ପୋଲ ଓ ପାଚେରି ତିଆରି ଜାଣିଥିଲେ ମାତ୍ର ।

ସଂକ୍ଷେପରେ ୟୁରୋପୀୟ ପଣ୍ଡିତମାନଙ୍କ ମତରେ ବୌଦ୍ଧ ଯୁଗରେ ଆଲେକଜାଣ୍ଡରଙ୍କ ଭାରତ ଆଗମନ ଉତ୍ତାରୁ ଭାରତବାସିମାନେ ଗ୍ରୀକମାନଙ୍କ-ଠାରୁ ପ୍ରସ୍ତର-ଶିଳ୍ପ ଶିକ୍ଷା କରିଥିଲେ । ହଣ୍ଟର ସାହେବ ଏହି ମତସମର୍ଥନ କରିବାକୁ ଯାଇଁ ମାଦଳା ପାଞ୍ଜିର ଅନୁଶୀଳନ କରିଅଛନ୍ତି । ମାଦଳା ପାଞ୍ଜିରେ ଲେଖା ଅଛି, ଯବନମାନେ ଓଡ଼ିଶାରେ ୧୪୬ ବର୍ଷ ରାଜତ୍ୱ କରିଥିଲେ; ଏହି ଯବନମାନଙ୍କୁ ଗ୍ରୀକ ବୋଲି ସେ ଅନୁମାନ କରିଅଛନ୍ତି; କିନ୍ତୁ ହଣ୍ଟର ସାହେବଙ୍କର ଏ ଅନୁମାନ ଭ୍ରାନ୍ତିପୂର୍ଣ୍ଣ । ପ୍ରଥମତଃ ଯବନ ଅର୍ଥରେ ମାଦଳା-ପାଞ୍ଜିଲେଖକ କେଉଁମାନଙ୍କୁ ଗଣନା କରିଅଛନ୍ତି, ତାହାର କୌଣସି ଆଭାସ ସେ ଦେଇ ନାହାନ୍ତି; କିନ୍ତୁ ଆମ୍ଭେମାନେ ଉତ୍ତମରୂପେ ଜାଣୁ, ହିନ୍ଦୁଧର୍ମାବଲମ୍ବିମାନେ ଅନ୍ୟ ଧର୍ମାବଲମ୍ବିମାନଙ୍କୁ ମ୍ଳେଚ୍ଛ ବା ଯବନ ଆଖ୍ୟା ଦେଉଥିଲେ । ସେହି ଅର୍ଥରେ ବୌଦ୍ଧମାନଙ୍କୁ ସେମାନେ ଯବନ ଆଖ୍ୟା ପ୍ରଦାନ କରିଥିଲେ । ମତ୍ସ୍ୟପୁରାଣର ଲେଖକ ତଦାନୀଂନ୍ତନ ଭାରତବାସୀ ଯବନମାନଙ୍କୁ "କୃଷ୍ଣାଞ୍ଜନ-ସମପ୍ରଭ" ବୋଲି ବର୍ଣ୍ଣନା କରିଅଛନ୍ତି; ଅର୍ଥାତ୍ ଯବନମାନଙ୍କର ଶାରୀରିକ ବର୍ଣ୍ଣ କୃଷ୍ଣ ବର୍ଣ୍ଣ ଥିଲା; କିନ୍ତୁ ୟୁରୋପାଗତ ଗ୍ରୀକମାନେ କୃଷ୍ଣକାୟ ଥିଲେ ବୋଲି ଆମ୍ଭେମାନେ ଆଦୌ କଳ୍ପନା କରି ନ ପାରୁଁ ।

ପ୍ରାଚୀନ ଭାରତରେ ଶିଳ୍ପକଳା ଚରମ ଉନ୍ନତି ଲାଭ କରିଥିବାର ଆମ୍ଭେମାନେ ଭୂରି ଭୂରି ପ୍ରମାଣ ଦେଖାଇ ପାରୁଁ ।

ପ୍ରଥମତଃ ବିଶ୍ୱକର୍ମା ଦେବଶିଳ୍ପୀ ଥିଲେ ବୋଲି ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଅଛି । ଦ୍ୱିତୀୟତଃ ଦେବତା ଓ ଅସୁରମାନଙ୍କ ମଧ୍ୟରେ ନିରନ୍ତର ବିବାଦ ଲାଗିଥିବାରୁ ଅସୁରମାନଙ୍କର ପ୍ରଧାନ ଶିଳ୍ପୀ ବା ଇଞ୍ଜିନିୟର ଥିଲେ—ମୟ ଦାନବ । ଏହି ମୟ ଦାନବ ମହାଭାରତବର୍ଣ୍ଣିତ ଯୁଧିଷ୍ଠିରଙ୍କ ରାଜସୂୟ

ଯଜ୍ଞଗୃହ ନିର୍ମାଣ କରିଥିଲେ । ମହାଭାରତବର୍ଣ୍ଣିତ ଏ ସଭାଗୃହର ବୃତ୍ତାନ୍ତ ପାଠ କଲେ ତାହାକୁ ତାଳପତ୍ରି ଘର ବୋଲି କେହି କଳ୍ପନା ମଧ୍ୟ କରିବେ ନାହିଁ । ରାମାୟଣବର୍ଣ୍ଣିତ ଦଶରଥଙ୍କ ରାଜପ୍ରାସାଦ, ଅଯୋଧ୍ୟା ନଗରୀର ହର୍ମ୍ୟା-ବଳୀର ବୃତ୍ତାନ୍ତ ପାଠ କଲେ ତାକୁ ଝାଟିମାଟି ଘର ବୋଲି କଦାପି କଳ୍ପନା କରାଯାଇ ପାରିବ ନାହିଁ । ରାମାୟଣ ଓ ମହାଭାରତର ନିର୍ମାଣକାଳ ସମ୍ବନ୍ଧରେ ପଣ୍ଡିତମାନଙ୍କ ମଧ୍ୟରେ ଯେତେ ମତଭେଦ ଥାଉ ପଛକେ, ତାହା ଯେ ଅଲେକଜାଣ୍ଡରଙ୍କ ଭାରତ ଆଗମନର ବହୁ ପୂର୍ବରୁ ରଚିତ ହୋଇଥିଲା, ଏ ବିଷୟରେ ମତଦ୍ୱୈଧ ହୋଇ ନ ପାରେ । ତୃତୀୟତଃ ଡାକ୍ତର ଗୋଲ୍ଡଷ୍ଟୁକରଙ୍କ ମତରେ ପାଣିନି ତାଙ୍କର ବ୍ୟାକରଣ ଗ୍ରନ୍ଥ ଖ୍ରୀ: ପୂ: ନବମ ଶତାବ୍ଦୀଠାରୁ ଏକାଦଶ ଶତାବ୍ଦୀ ମଧ୍ୟରେ ପ୍ରଣୟନ କରିଥିଲେ; ତାହା ଅଲେକଜାଣ୍ଡରଙ୍କ ଭାରତ ଆଗମନର ଅଠଶତ ବର୍ଷ ପୂର୍ବର କଥା; ସେ ବ୍ୟାକରଣରେ ଇଷ୍ଟକ, ସ୍ତମ୍ଭ, ଭାସ୍କର, ଅଟ୍ଟାଳିକା ପ୍ରଭୃତି ଶବ୍ଦର ଉଲ୍ଲେଖ ଦେଖାଯାଏ । ଏ ସମସ୍ତର ତତ୍କାଳୀନ ବିଦ୍ୟମାନତା ସେଥିରୁ ସ୍ପଷ୍ଟ ଅନୁମିତ ହୁଏ । ଚତୁର୍ଥତଃ ରାଣୀଗୁମ୍ଫା ସମ୍ମୁଖସ୍ଥ ଗୋଟିଏ ଦ୍ୱାରପାଳ ମୂର୍ତ୍ତିର ପାଦରେ ବୁଟ୍ ଯୋତା ଦେଖି କୌଣସି କୌଣସି ୟୁରୋପୀୟ ପଣ୍ଡିତ ଅନୁମାନ କରନ୍ତି, ଗ୍ରୀକମାନେ ଯୋତା ପିନ୍ଧୁଥିଲେ; ତାହାର ଅନୁକରଣରେ ଏ ମୂର୍ତ୍ତି ନିର୍ମିତ ହୋଇଥିଲା; ଡାକ୍ତର ରାଜେନ୍ଦ୍ର ଲାଲ ମିତ୍ର ମହାଶୟ ସ୍ୱୀୟ 'ଇଣ୍ଡୋ-ଏରିଆନ' ପୁସ୍ତକରେ ପ୍ରମାଣ କରିଅଛନ୍ତି, ଭାରତବାସିମାନେ ଏକପ୍ରକାର ବୁଟ୍ ଯୋତା ବ୍ୟବହାର କରୁଥିଲେ; ଉତ୍କଳରେ ମଧ୍ୟ ପାଣ୍ଡୋଇ ଶବ୍ଦ ପ୍ରଚଳିତ; ସୁତରାଂ ଦ୍ୱାରପାଳର ପାଦରେ ବୁଟ୍ ଯୋତା ଦେଖି ତାକୁ ଗ୍ରୀକ ସ୍ଥାପତ୍ୟର ପ୍ରଭାବ ବୋଲି ଅନୁମାନ କରିବାର କୌଣସି କାରଣ ନାହିଁ । ପୁନଶ୍ଚ ପିକକ୍ ସାହେବ ଜଣେ ଇତିହାସଜ୍ଞ, ତାଙ୍କର 'ଇଣ୍ଡିଆ ଇନ୍ ଗ୍ରୀସ' ( India in Greece ) ପୁସ୍ତକରେ ସେ ଭାରତ-ବାସିମାନେ ଗ୍ରୀସ ଦେଶରେ ଉପନିବେଶ ସ୍ଥାପନ କରିଥିବାର ପ୍ରମାଣ କରି-ଅଛନ୍ତି । ତେଣୁ ଗ୍ରୀକମାନେ ଭାରତବାସିଙ୍କଠାରୁ ବୁଟ ଯୋତାର ବ୍ୟବହାର

ବା ଅନ୍ୟ କଳା ଶିକ୍ଷା କରି ନ ଥିବେ କାହିଁକି ? ପକ୍ଷାନ୍ତରେ ଆମ୍ଭେମାନେ ଯଦି ସ୍ୱୀକାର କରୁଁ, ଗ୍ରୀକମାନଙ୍କଠାରୁ ଭାରତବାସୀମାନେ ବୁଟ୍ ଯୋଡାର ବ୍ୟବହାର ଶିକ୍ଷା କରିଥିଲେ, ତଥାପି ସେଥିରୁ କଦାପି ଅନୁମିତ ହେବ ନାହିଁ ଯେ, ଭାରତୀୟ ଶିଳ୍ପ ଗ୍ରୀକ ପ୍ରଭାବରେ ପ୍ରଭାବାନ୍ୱିତ ।

ଭାରତବର୍ଷରେ ଶିଳ୍ପ ବିଦ୍ୟା ଅତି ପ୍ରାଚୀନ କାଳରୁ ପ୍ରଚଳିତ ଥିବାର ଅନ୍ୟତମ ପ୍ରମାଣ ଭାରତୀୟ ଭାଷାଲିଖିତ ଶିଳ୍ପଶାସ୍ତ୍ରର ବିଦ୍ୟମାନତା । ମାନସାର, ମୟମତ, କାଶ୍ୟପ, ବୈଖାନସ, ସକଳାଧିକାର, ବିଶ୍ୱକର୍ମୀୟ, ସନତ୍କୁମାରସାରସ୍ୱତ୍ୟମ୍ ପ୍ରଭୃତି ଭାରତୀୟ ଭାଷାଲିଖିତ ପୁସ୍ତକମାନଙ୍କର ସନ୍ଧାନ ମିଳିଅଛି । ଭାରତବର୍ଷରେ ଶିଳ୍ପବିଦ୍ୟାର ବହୁଳ ପ୍ରଚାର ନ ଥିଲେ ଏପରି ବୈଜ୍ଞାନିକ ପ୍ରଣାଳୀର ପୁସ୍ତକ ପ୍ରଣୀତ ହୋଇ ନ ଥାନ୍ତା ।

ଭାରତୀୟ ସ୍ଥାପତ୍ୟ ଗ୍ରୀକ ସ୍ଥାପତ୍ୟର ଅନୁଗାମୀ ହୋଇଥିଲେ ଉଭୟ ମଧ୍ୟରେ ଆକାରଗତ ସାଦୃଶ୍ୟ ବିଦ୍ୟମାନ ଥିବା ସମ୍ଭବ । କିନ୍ତୁ ଇଞ୍ଜିନିୟର-ମାନଙ୍କ ମତରେ ଏ ଉଭୟ ମଧ୍ୟରେ ବିଶେଷ ପାର୍ଥକ୍ୟ ଲକ୍ଷିତ ହୁଏ । ଓଡ଼ିଶାର ଭାସ୍କର୍ଯ୍ୟ ହିନ୍ଦୁ-ଭାରତୀୟ ( Indo-Aryan ) ଶ୍ରେଣୀର; ଗ୍ରୀସ ଦେଶୀୟ ସ୍ତମ୍ଭମାନ ସାଧାରଣତଃ ଗୋଲାକାର ବା ବୃତ୍ତାକାର; କିନ୍ତୁ ଓଡ଼ିଶାର ସ୍ତମ୍ଭମାନ ବ୍ରହ୍ମକାନ୍ତ, ଶିବକାନ୍ତ, ସ୍କନ୍ଦକାନ୍ତ, ବିଷ୍ଣୁକାନ୍ତ ଓ ରୁଦ୍ରକାନ୍ତବିଶିଷ୍ଟ । * ଗ୍ରୀକ ବା ରୋମକ ପ୍ରସ୍ତାର ବା ଉଷିର, ଉପପୀଠ, ଉପାନ, ବୋଧିକା ପ୍ରଭୃତି ହିନ୍ଦୁ-ଆର୍ଯ୍ୟ ସ୍ଥାପତ୍ୟର ପ୍ରସ୍ତାର ପ୍ରଭୃତିଠାରୁ ସମ୍ପୂର୍ଣ୍ଣ ବିଭିନ୍ନ ।

ଓଡ଼ିଶାର ମନ୍ଦିରଗାତ୍ରରେ ଅଙ୍କିତ ମୂର୍ତ୍ତିମାନଙ୍କ ସହିତ ଗ୍ରୀସ ଓ ରୋମ ଦେଶୀୟ ମୂର୍ତ୍ତି ଆଦି ମଧ୍ୟ ତୁଳନା କଲେ ଆମ୍ଭେମାନେ ଯେଉଁ ଏକମାତ୍ର

* ବ୍ରହ୍ମକାନ୍ତ—ଚତୁଷ୍କୋଣବିଶିଷ୍ଟ;
ଶିବକାନ୍ତ—ପଞ୍ଚକୋଣବିଶିଷ୍ଟ;
ସ୍କନ୍ଦକାନ୍ତ—ଷଟ୍‌କୋଣବିଶିଷ୍ଟ;
ବିଷ୍ଣୁକାନ୍ତ—ଅଷ୍ଟକୋଣବିଶିଷ୍ଟ;
ରୁଦ୍ରକାନ୍ତ—ଷୋଡ଼ଶକୋଣବିଶିଷ୍ଟ ।

ସିଦ୍ଧାନ୍ତରେ ଉପନୀତ ହେଉ । ଉତ୍କଳଶିଳ୍ପିରଚିତ ନାରୀଦେହର ଯୌବନ-ଶ୍ରୀ ସହିତ ଗ୍ରୀକ ଭାସ୍କର୍ଯ୍ୟମାନଙ୍କର ଅଙ୍ଗସୌଷ୍ଠବ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଗ୍ରୀକ ଶିଳ୍ପସୁଲଭ ନାରୀଶରୀରର ମାଂସପେଶୀସମୃଦ୍ଧ ଉତ୍କଳୀୟ ନାରୀମୂର୍ତ୍ତିରେ ଦୃଷ୍ଟ ହୁଏ ନାହିଁ ।

ଆଲେକଜାଣ୍ଡର ଭାରତ ଜୟର ପରଠାରୁ ଦୀର୍ଘକାଳ ଭାରତରେ ଅବସ୍ଥାନ କରିଥିଲେ ଇଉରୋପୀୟ ପଣ୍ଡିତମଣ୍ଡଳୀଙ୍କ କଳ୍ପିତ ଗ୍ରୀକ ପ୍ରଭାବ-ବିଷୟକ ଉକ୍ତିର ସାରବତ୍ତା ଆମ୍ଭେମାନେ କଥଞ୍ଚିତ ହୃଦୟଙ୍ଗମ କରି ପାରନ୍ତୁ; କିନ୍ତୁ ଆଲେକଜାଣ୍ଡରଙ୍କର ଅଳ୍ପକାଳ ଭାରତରେ ଅବସ୍ଥାନ ଇଉରୋପୀୟ ପଣ୍ଡିତମାନଙ୍କ ପ୍ରତିପାଦିତ ମତର ଭିତ୍ତି ହୋଇ ନ ପାରେ । ବିଜିତ ଜାତି ବା ଦେଶରେ ସଭ୍ୟତା ବା ଶିଳ୍ପ କଳା ବିଜେତାର ପ୍ରଭାବରେ ପ୍ରଭାବାନ୍ୱିତ ହେବା ଲାଗି ବିଜେତା ବିଜିତ ପ୍ରଦେଶରେ ଦୀର୍ଘକାଳ ଅବସ୍ଥାନ କରିବା ଆବଶ୍ୟକ ।

କୌଣସି କୌଣସି ଇଉରୋପୀୟ ପଣ୍ଡିତଙ୍କ ମତରେ ସୁଦ୍ଧା ହ୍ୟାଭେଲ ବା ଫର୍ଗୁସନ ପ୍ରଭୃତିଙ୍କ ମତ ଅସାର ବୋଲି ପ୍ରତିପନ୍ନ ହୋଇଅଛି । ଡାକ୍ତର ଗୁସ୍ତାଭ ଲେବନ କହିଅଛନ୍ତି—"ଦୀର୍ଘକାଳ ଗ୍ରୀକ ସଭ୍ୟତା ସଂସ୍ପର୍ଶରେ ଆସି ସୁଦ୍ଧା ଭାରତବର୍ଷ ଗ୍ରୀସ ଦେଶଠାରୁ ଶିଳ୍ପ ବିଷୟରେ କୌଣସି ଋଣ ଗ୍ରହଣ କରି ନାହିଁ ।" * ଲେଫ୍‌ଟେନାଣ୍ଟ କୋଲ ମଧ୍ୟ ଲେଖିଅଛନ୍ତି—'ଭାରତବାସିମାନେ ବହୁ ଶତାବ୍ଦୀବ୍ୟାପୀ ଶିଳ୍ପଜ୍ଞ; ଶିଳ୍ପଶାସ୍ତ୍ର ଆଲୋଚନାରେ ଭାରତୀୟ ଚିନ୍ତା ଆଲୋଚନା ପ୍ରଧାନ ।' †

---

* Les Monuments de L' Inde par Dr. Gustave Le Bon PP 12-15

† Lieut. Cole R. E. 'The Architecture of Delhi.' P 8

ଭୁବନେଶ୍ୱର ।

ଭାରତୀୟ ଶିଳ୍ପର ଅଭ୍ୟୁତ୍ଥାନ ଯେଉଁ ଦେଶରେ ବା ଯେଉଁ ଯୁଗରେ ହୋଇ ଥାଉନା କାହିଁକି, ତାହା ଭାରତର ନିଜସ୍ୱ; ତାହା ଭାରତର ତଥା ଉତ୍କଳଭୂମିର ଅତୀତ ଗୌରବର ଉଜ୍ଜ୍ୱଳ ନିଦର୍ଶନ; ବିଭିନ୍ନ ପ୍ରଦେଶରେ ଏ ସ୍ଥାପତ୍ୟର ଯେଉଁ ଆକାରଗତ ପାର୍ଥକ୍ୟ ଲକ୍ଷିତ ହୁଏ, ତାହା ସେହି ପ୍ରଦେଶମାନଙ୍କର ସ୍ଥପତିଗଣଙ୍କର କଳ୍ପନାପ୍ରସୂତ; ସେଥିରେ ବୈଦେଶିକ ପ୍ରଭାବ କଳ୍ପନା କରିବା ଅନ୍ୟ ଜାତିର ଗୌରବକୁ ଖର୍ବ କରିବାର ଚେଷ୍ଟା ଭିନ୍ନ ଅନ୍ୟ କିଛି ନୁହେଁ ।

## ଉତ୍କଳ ଶିଳ୍ପର ବିଭାଗ ।

ଉତ୍କଳୀୟ ସ୍ଥାପତ୍ୟ ଦୁଇପ୍ରକାର ଶିଳ୍ପର ସମାବେଶ ବୋଲି ଅଧିକାଂଶ ବଙ୍ଗୀୟ ଲେଖକଙ୍କର ମତ । ସେମାନଙ୍କ ମତରେ ଉତ୍କଳୀୟ ମନ୍ଦିରସମୂହର ଶିଖରାଂଶ ଉତ୍ତର ଭାରତୀୟ ଶିଳ୍ପର ଆଦର୍ଶରେ ଓ ଉତ୍କଳର ପିରାମିଡ୍ ଆକୃତି ମନ୍ଦିରଗୁଡ଼ିକ ଦକ୍ଷିଣ ଭାରତୀୟ ଶିଳ୍ପର ଆଦର୍ଶରେ ନିର୍ମିତ; କିନ୍ତୁ ଏପ୍ରକାର ଅଭିମତ ପ୍ରକାଶଦ୍ୱାରା ସେମାନେ ଉତ୍କଳୀୟ ଶିଳ୍ପିମାନଙ୍କୁ ସେମାନଙ୍କର ନ୍ୟାଯ୍ୟ ପ୍ରାପ୍ୟ ପ୍ରଦାନ କରିବାକୁ କୁଣ୍ଠିତ । ଏପ୍ରକାର ଅଭିମତରୁ ସ୍ପଷ୍ଟ ଜଣା-ଯାଏ ଯେ, ଯେପରି ଉତ୍କଳୀୟ ଶିଳ୍ପ ମୌଳିକ ନୁହେ, ତାହା ଭାରତର ଅନ୍ୟ ପ୍ରାଦେଶିକ ଶିଳ୍ପର ଅନୁକରଣ ବୋଲି ପ୍ରତିପାଦନ କରିବା ସେମାନଙ୍କର ଅଭିପ୍ରାୟ । ଯେଉଁ ଜାତିର ଶିଳ୍ପସମୃଦ୍ଧି କାଳର ଘୋର ଆବର୍ତ୍ତରେ ମଧ୍ୟ ତାହାର ଶିଳ୍ପଗୌରବକୁ ଅକ୍ଷୁଣ୍ଣ ରଖିଅଛି, ତାହାର ଶିଳ୍ପର ବିଶେଷତ୍ୱ ବା ନିଜସ୍ୱ କିଛି ନ ଥିଲା, ଏ ମତ ପ୍ରକାଶ କରିବା ଯଥାର୍ଥରେ ଅନ୍ୟ ଜାତିର ପୂର୍ବ ଗୌରବକୁ ଖର୍ବ କରିବା ଭିନ୍ନ ଅନ୍ୟ କିଛି ନୁହେଁ ।

ଶ୍ରୀଯୁକ୍ତ ମନୋମୋହନ ଗଙ୍ଗୋପାଧ୍ୟାୟପ୍ରମୁଖ ପଣ୍ଡିତମାନେ ଉତ୍କଳ ଶିଳ୍ପର ଚତୋଟି ଯୁଗ ନିର୍ଦ୍ଦେଶ କରିଅଛନ୍ତି । (୧) ବୌଦ୍ଧ ବା ଜୈନ ଯୁଗ, (୨) ଶୈବ ଯୁଗ, (୩) ବୈଷ୍ଣବ ଯୁଗ ଏବଂ ସୌର ଯୁଗ । ବୌଦ୍ଧ ବା ଜୈନ

ଯୁଗରେ ଗିରିଗୁମ୍ଫାମାନ ଖୋଦିତ ଓ ନିର୍ମିତ ହୋଇଥିଲା; ଖ୍ରୀଷ୍ଟପୂର୍ବ ପଞ୍ଚମ ବା ଷଷ୍ଠ ଶତାବ୍ଦୀଠାରୁ ଖ୍ରୀଷ୍ଟୀୟ ପଞ୍ଚମ ବା ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଏ ଯୁଗର ସମୟ ନିର୍ଦ୍ଦେଶ କରାଯାଏ । ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ଶୈବ ଯୁଗ; ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀଠାରୁ ବୈଷ୍ଣବ ଏବଂ ସୌର ଯୁଗ । ଭୁବନେଶ୍ୱର ମନ୍ଦିରର ପ୍ରାଚୀନତା ଆଲୋଚନା ପ୍ରସଙ୍ଗରେ ଏ ଯୁଗ-ବିଭାଗର ଆଲୋଚନା ଆବଶ୍ୟକ ।

କୌଣସି କୌଣସି ପ୍ରତ୍ନତତ୍ତ୍ୱବିଦ୍ ପଣ୍ଡିତମାନେ ପ୍ରାଦେଶିକ ବିଭାଗ ଅନୁସାରେ ଭାରତୀୟ ଶିଳ୍ପକୁ ବିଭାଗ କରିଅଛନ୍ତି । ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ଓଡ଼ିଶାର ଶିଳ୍ପକୁ ଉତ୍ତର ଭାରତୀୟ ସ୍ଥାପତ୍ୟର ଉପବିଭାଗ ବୋଲି ନିର୍ଣ୍ଣୟ କରିଅଛନ୍ତି । ସେହି ଉତ୍କଳ ଶିଳ୍ପକୁ ସେ 'କେନ୍ଦ୍ର ଭାରତୀୟ ଶିଳ୍ପ' ଆଖ୍ୟା ମଧ୍ୟ ପ୍ରଦାନ କରିଅଛନ୍ତି । ବୌଦ୍ଧ ଯୁଗର ଶିଳ୍ପକଳାକୁ ସେ 'ବୌଦ୍ଧ ବିଭାଗ' ବୋଲି କଳ୍ପନା କରିଅଛନ୍ତି । ତାଙ୍କ ମତରେ ଓଡ଼ିଶାର ବୌଦ୍ଧ କୀର୍ତ୍ତିମାନ ବୌଦ୍ଧ ବିଭାଗର ଅନ୍ତର୍ଗତ । ଓଡ଼ିଶାର ଅନ୍ୟ ସମସ୍ତ ମନ୍ଦିର 'କେନ୍ଦ୍ରଭାରତୀୟ' ଶିଳ୍ପକଳାବିଶିଷ୍ଟ । *

ସ୍ଥାପତ୍ୟ ହିସାବରେ ବିଶେଷଜ୍ଞମାନେ ଉତ୍କଳୀୟ ମନ୍ଦିରମାନଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରିଅଛନ୍ତି । (୧) ଅସ୍ତମ୍ଭ ( astylar ), (୨) ଉଚ୍ଚ ଶିଖରଯୁକ୍ତ, (୩) ତୃତୀୟ ଶ୍ରେଣୀର ମନ୍ଦିରସମୂହ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ସମିଶ୍ରଣ ମାତ୍ର । ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର ପ୍ରଥମ ଶ୍ରେଣୀର; ମୁକ୍ତେଶ୍ୱର ଓ ପରଶୁରାମେଶ୍ୱର ମନ୍ଦିରରେ ସ୍ତମ୍ଭାଦି ଆଦୌ ନାହିଁ । ଲିଙ୍ଗରାଜ ମନ୍ଦିର ଦ୍ୱିତୀୟ ଶ୍ରେଣୀର । ଭୁବନେଶ୍ୱର କ୍ଷେତ୍ରରେ ପରବର୍ତ୍ତୀ କାଳରେ ନିର୍ମିତ ମନ୍ଦିରମାନ ତୃତୀୟ ଶ୍ରେଣୀର; ଏ ମନ୍ଦିରମାନ ସ୍ତମ୍ଭବିଶିଷ୍ଟ ଓ ବହୁବିଧ କାରୁ-କାର୍ଯ୍ୟପୂର୍ଣ୍ଣ ।

---

* ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର—Antiquities of Orissa Vol. I, PP 24-26.

ଭୁବନେଶ୍ୱର ।

ଉତ୍କଳୀୟ ଶିଳ୍ପର ଅନ୍ୟ ଏକ ବିଭାଗ ମଧ୍ୟ ଅଛି, ବୌଦ୍ଧ ବା ଜୈନ ଓ ବ୍ରାହ୍ମଣ୍ୟ । ବ୍ରାହ୍ମଣ୍ୟ ବିଭାଗକୁ ତିନୋଟି ଉପବିଭାଗରେ ବିଭକ୍ତ କରାଯାଇଅଛି । ଯଥା—ଦ୍ରାବିଡ଼ୀୟ, ଚାଲୁକ୍ୟ, ହିନ୍ଦୁ-ଭାରତୀୟ ବା ଆର୍ଯ୍ୟ-ଭାରତୀୟ (Indo-Aryan) । ଦ୍ରାବିଡ଼ୀୟ ସ୍ଥାପତ୍ୟର ଆଦର୍ଶରେ ନିର୍ମିତ ମନ୍ଦିରମାନଙ୍କର ପାଦ-ଦେଶ (ground plan) ଆୟତାକାର; ଏବଂ ଉପରର ଗଠନ ଆଦି ପିରାମିଡ଼ ଆକୃତିବିଶିଷ୍ଟ । ହିନ୍ଦୁ-ଭାରତୀୟ ରୀତିର ସ୍ଥାପତ୍ୟବିଶିଷ୍ଟ ମନ୍ଦିରର ପାଦଦେଶ (ground p'au) ସମଚତୁଷ୍କୋଣବିଶିଷ୍ଟ (Square) ଏବଂ ଗଠନ ଆଦି କୁଟିଳ ରେଖାଯୁକ୍ତ (Curvilinear); ଚାଲୁକ୍ୟ ଜାତୀୟ ଶିଳ୍ପ ଦ୍ରାବିଡ଼ୀୟ ଶିଳ୍ପର ପରିବର୍ତ୍ତିତ ଓ ପରିବର୍ଦ୍ଧିତ ସଂସ୍କରଣ ମାତ୍ର, ପାର୍ଥକ୍ୟ ମଧ୍ୟରେ ଏତିକି ଯେ ଚାଲୁକ୍ୟ ସ୍ଥାପତ୍ୟରେ ଯୋଗ [Pilasters] ଏବଂ ବାହାର ଖିଲାଣ [buttresses] ଅଧିକ । ଦ୍ରାବିଡ଼ ଏବଂ ଚାଲୁକ୍ୟ ଶିଳ୍ପ ଦାକ୍ଷିଣାତ୍ୟରେ ଏବଂ ହିନ୍ଦୁ-ଭାରତୀୟ ଶିଳ୍ପ ହିନ୍ଦୁସ୍ଥାନ ଓ ଆର୍ଯ୍ୟାବର୍ତ୍ତରେ ପ୍ରଚଳିତ । ଓଡ଼ିଶାର ଶିଳ୍ପ ହିନ୍ଦୁ-ଭାରତୀୟ ଜାତୀୟ ।

ଓଡ଼ିଶାର ମନ୍ଦିରମାନ ମଧ୍ୟ ବିଭିନ୍ନ ଶ୍ରେଣୀର; ଯଥା—ଏକରଥ, ତ୍ରିରଥ, ପଞ୍ଚରଥ, ସପ୍ତରଥ ଓ ନବରଥ ଦେଉଳ । ଭୁବନେଶ୍ୱରସ୍ଥ ବୈତାଳ ଦେଉଳ, ତହିଁର ଜଗମୋହନ ଓ ପରଶୁରାମେଶ୍ୱର ଦେଉଳର ଜଗମୋହନ ପ୍ରଭୃତି ଏକରଥ ଶ୍ରେଣୀର; ପରଶୁରାମେଶ୍ୱର ଦେଉଳର ବିମାନ ତ୍ରିରଥବିଶିଷ୍ଟ; ଲିଙ୍ଗରାଜ ମନ୍ଦିର, ଅନନ୍ତବାସୁଦେବ ମନ୍ଦିର ପ୍ରଭୃତି ପଞ୍ଚରଥବିଶିଷ୍ଟ । ପଞ୍ଚରଥ-ଯୁକ୍ତ ଦେଉଳ ଭୁବନେଶ୍ୱରରେ ଅନେକ; ରାଜାରାଣୀ, ବ୍ରହ୍ମେଶ୍ୱର, ଭାସ୍କରେଶ୍ୱର, ମେଘେଶ୍ୱର, ରାମେଶ୍ୱର, ସିଦ୍ଧେଶ୍ୱର, କେଦାରେଶ୍ୱର ଗୌରୀ, ଯମେଶ୍ୱର ଦେଉଳ ପ୍ରଭୃତି ପଞ୍ଚରଥ ଶ୍ରେଣୀର । ଶାରି ଦେଉଳର ବିମାନ ଓ ଜଗମୋହନ ସପ୍ତରଥବିଶିଷ୍ଟ; ଓଡ଼ିଶାରେ ନବରଥ ଦେଉଳ ଅତି ବିରଳ; ଭୁବନେଶ୍ୱରସ୍ଥ ଚନେଶ୍ୱର ଦେଉଳକୁ ନବରଥ ଦେଉଳ ବୋଲାଯାଇ ପାରେ ।

କାହାର କାହାର ମତରେ ଓଡ଼ିଶାର ଦେଉଳମାନ ଦୁଇ ଶ୍ରେଣୀରେ ବିଭକ୍ତ, ରେଖ ଦେଉଳ ଓ ପୀଢ଼ ଦେଉଳ । ଯେଉଁ ମନ୍ଦିରମାନଙ୍କର ବିମାନ




ରେଖଦେଉଳ ।

(୧) କଳସଦଣ୍ଡ, (୨) କଳସହାଣ୍ଡି, (୩) କଳସପାଦ, (୪) ତ୍ରିପଟଧୋଇ, (୫) ଅଁଳା, (୬) ବେକୀ, (୭) ଘଣ୍ଟଚକ୍ର, (୮) ପଞ୍ଚମଭୂମି, (୯) ଚତୁର୍ଥଭୂମି, (୧୦) ତୃତୀୟଭୂମି, (୧୧) ଦ୍ୱିତୀୟଭୂମି, (୧୨) ଅନର୍ଥପଗ, (୧୩) ରାହାପଗ, (୧୪) ଊର୍ଦ୍ଧ୍ୱଜାଙ୍ଘ, (୧୫) ଉପରବରଣ୍ଡି, (୧୬) ବନ୍ଧନ, (୧୭) ବରଣ୍ଡି, (୧୮) ଜାଙ୍ଘ । (କ) କନକପଗ, (ଖ) ରଥକ, (ଗ) ବାଡ, (ଘ) ପଞ୍ଚକର୍ମ, (ଙ) ଛକର୍ମ, (ଚ) ସାତକର୍ମ ।




ପଞ୍ଚରଥ ଦେଉଳର ଭୂମି ।

(୧) ରାହାପଗ, (୨) ଅନର୍ଥପଗ, (୩) କନକପଗ, (୪) ଦ୍ୱାର ।

୧୪ ପୃଷ୍ଠା (ଖ)

କୁଟିଳରେଖାବିଶିଷ୍ଟ [ Curvilinear ] ସେଗୁଡ଼ିକୁ ରେଖ ଦେଉଳ, ଯେଉଁମାନଙ୍କ ବିମାନର ଆକୃତି ପିରାମିଡ଼ ପରି ସେଗୁଡ଼ିକୁ ପୀଢ଼ ଦେଉଳ ବୋଲିଯାଏ । ପୀଢ଼ ବା ରେଖ ଦେଉଳ ମଧ୍ୟ ଏକରଥ, ତ୍ରିରଥ, ପଞ୍ଚରଥ, ସପ୍ତରଥ ବା ନବରଥବିଶିଷ୍ଟ ହୋଇ ପାରେ ।

ପୀଢ଼ ଦେଉଳର ମଧ୍ୟ ଦିଓଟି ଉପବିଭାଗ ଦେଖାଯାଏ, ମନ୍ଦିରର ଉଚ୍ଚତା ଅନୁସାରେ ଏ ଉପବିଭାଗର ସୃଷ୍ଟି । ଯଥା—କାଠଗୁଳିଆ, ନାହାଗୁଳିଆ; କାଠଗୁଳିଆ ଦେଉଳର ବିମାନର ଉଚ୍ଚତା ବାଢ଼ର ଉଚ୍ଚତାର ⅔ (ଦୁଇ-ତୃତୀୟାଂଶ ) । ନାହାଗୁଳିଆ ଦେଉଳର ବିମାନ ବାଢ଼ର ଉଚ୍ଚତାର ଉଚ୍ଚତା ସହିତ ସମାନ, କିମ୍ବା ବାଢ଼ର ଉଚ୍ଚତାର ⅔ ସହିତ ସମାନ । ମୁକ୍ତେଶ୍ୱର ମନ୍ଦିରର ଜଗମୋହନ, କପିଳେଶ୍ୱର ମନ୍ଦିରର ଭୋଗମଣ୍ଡପ ନାହାଗୁଳିଆ ଶ୍ରେଣୀର ଓ ଲିଙ୍ଗରାଜ ମନ୍ଦିର, ଅନନ୍ତବାସୁଦେବ ମନ୍ଦିର ପ୍ରଭୃତିର ଜଗମୋହନ କାଠଗୁଳିଆ ଶ୍ରେଣୀର ।

ରେଖ ଦେଉଳରେ ନିମ୍ନୋକ୍ତ ବିଶେଷତ୍ୱ ଦ୍ରଷ୍ଟବ୍ୟ । ତଳପତ୍ତନ ବା ପୋତା ବା ପିଣ୍ଡ (Pavement), ପୀଠ (Plinth), ବାଢ଼ (Cube), ରେଖ ବା ଗଣ୍ଡି (Curvilinear tower), ବେକି (neck), ଆମ୍ଳ (denticulatd block of stone), କର୍ପୂରୀ ( Stone cap ), କଳଶ, ତ୍ରିଶୂଳ ଏହି ବିଭିନ୍ନ ଅଂଶ ଗୋଟିଏ ରେଖଦେଉଳରେ ଦେଖାଯାଏ । ରେଖ ଦେଉଳର ବିଭିନ୍ନ ଅଂଶ ପାର୍ଶ୍ୱବର୍ତ୍ତୀ ଚିତ୍ରରେ ପ୍ରଦର୍ଶିତ ହୋଇଅଛି ।

ରେଖ ଦେଉଳର ବାଢ଼ ମଧ୍ୟ ପାଞ୍ଚ ଭାଗରେ ବିଭକ୍ତ, ଜାଙ୍ଘ ବା ପଞ୍ଚକର୍ମ, ତଳବରଣ୍ଡି, ବନ୍ଧନ, ଉପରବରଣ୍ଡି, ଊର୍ଦ୍ଧ୍ୱଜାଙ୍ଘ; ତଳବରଣ୍ଡି, ବନ୍ଧନ, ଉପରବରଣ୍ଡି ତିନକର୍ମର ଅନ୍ତର୍ଗତ, ଊର୍ଦ୍ଧ୍ୱଜାଙ୍ଘ ସାତକାମର ଅନ୍ତର୍ଗତ । ପଞ୍ଚକର୍ମ ମଧ୍ୟରେ ପାଦ, କୁମ୍ଭ, ପଟା, କଣୀ, ବସନ୍ତ ଏହି ପାଞ୍ଚୋଟି ଅଂଶ ବିଦ୍ୟମାନ; ତିନକାମ ମଧ୍ୟରେ ସାକର ଓ ପାଟ, ଡ଼ୋର ଓ ପାଦ ଏହି କୋଡ଼ୋଟି ବିଭାଗ ଅଛି; ସାତକମ ମଧ୍ୟରେ ଶିଖର, ଉପରବରଣ୍ଡି ଓ ଊର୍ଦ୍ଧ୍ୱ

ଜାଙ୍ଘ ଏହି କେତୋଟି ଅଂଶ ବିଦ୍ୟମାନ; ଊର୍ଦ୍ଧ୍ୱ ଜାଙ୍ଘ ମଧ୍ୟରେ ବସନ୍ତ, ଫେଣୀ, କଣୀ, ବସନ୍ତ, କଣୀ, ଫେଣୀ ଓ ପଟ୍ଟା ଏହି ସାତଗୋଟି ବିଭାଗ ଅଛି । ଏହି ସାତକାମ ପର୍ଯ୍ୟନ୍ତ ବାଡ଼ (Cube), ବାଡ଼ ଉପରେ ରଥକ ବା ବିମାନ; ବିମାନର ଶେଷାଂଶ ଆଡ଼କୁ ବେକି; ବେକି ଉପରେ ଘାଠ, ତଦୁପରି କର୍ପୂରୀ, କର୍ପୂରୀ ଉପରେ କଳସ, କଳସ ଉପରେ ତ୍ରିଶୂଳ ।

ଉତ୍ତର ଭାରତର ସମସ୍ତ ମନ୍ଦିର ଆବୃତ ଚୌକ ବା ଚତୁର୍ଭୁଜ କ୍ଷେତ୍ରପରି । ଏ ନିୟମର ବ୍ୟତିକ୍ରମ କ୍ୱଚିତ୍ ଦୃଷ୍ଟ ହୁଏ । ବଙ୍ଗଦେଶର କୌଣସି କୌଣସି ତନ୍ତ୍ର ଉପାସନା ମନ୍ଦିର ତ୍ରିକୋଣାକାର; କିନ୍ତୁ ତ୍ରିକୋଣାକାର ମନ୍ଦିରମାନ ଆଧୁନିକ; ତାହା ପ୍ରାଚୀନ ବା ମଧ୍ୟ ଯୁଗର ନୁହେଁ; ରାଜେନ୍ଦ୍ରଲାଲ ମିତ୍ର ମହାଶୟଙ୍କ ମତରେ ହିମାଳୟଠାରୁ ଉତ୍କଳ ପର୍ଯ୍ୟନ୍ତ ସମସ୍ତ ମନ୍ଦିରର ବାଡ଼ [Cebv] ଦୈର୍ଘ୍ୟ ଆକୃତିବିଶିଷ୍ଟ; ଏଥିର କୌଣସି ବୈପରୀତ୍ୟ କୌଣସି-ଠାରେ ଲକ୍ଷିତ ହୁଏ ନାହିଁ । ଦକ୍ଷିଣ ଭାରତରେ ସମସ୍ତ ମନ୍ଦିର ଚତୁର୍ଭୁଜାକୃତି ଓ ଚତୁଷ୍କୋଣ ବିଶିଷ୍ଟ ।

ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ମହାଶୟ ତାହାଙ୍କ ପୁସ୍ତକରେ ବାରାଣସୀ, ବଙ୍ଗଦେଶ ଓ ଉତ୍କଳର ତିନୋଟି ମନ୍ଦିରର ଚିତ୍ର ପ୍ରଦାନ କରି ପ୍ରତ୍ୟେକର ବିଶେଷତ୍ୱ ଆଲୋଚନା କରିଅଛନ୍ତି । ତାଙ୍କ ମତରେ ଓଡ଼ିଶାର ମନ୍ଦିରର ଆଦର୍ଶରେ ଅନ୍ୟ ମନ୍ଦିରମାନ ନିର୍ମିତ ହୋଇଅଛି * ।

---

* If they (temples in Bengal and Benares) be compared with the Orissa form (as delineated in the wood cut No. 11) it will at once be perceived that the latter had supplied the model on which the former has been built, but that the builders have greatly improved upon the original plan. Antiquities of Orissa. Vol. I P 29.




ପୀଢ଼ଦେଉଳ ।

(୧) ଚକ୍ର, (୨) କଳସ, (୩) କର୍ପୂରି, (୪) ଅଁଳା,
(୫) ବାଢ଼ ।



ଉତ୍କଳ, ବଙ୍ଗ ଓ ବାରାଣସୀର ଦେଉଳମାନଙ୍କର ନମୁନା ।

୧୬ ପୃଷ୍ଠା (ଃ)

ଓଡ଼ିଶାର ମନ୍ଦିର ଓ ସ୍ଥାପତ୍ୟ ସମ୍ବନ୍ଧରେ ଆମ୍ଭେମାନେ ସାଧାରଣ ଭାବରେ ଆଲୋଚନା କରିଅଛୁଁ । ମୂଳ ଗ୍ରନ୍ଥରେ [ଭୁବନେଶ୍ୱର ପ୍ରସଙ୍ଗ] ଆଲୋଚନାରେ ଭୁବନେଶ୍ୱରଙ୍କ ପ୍ରଧାନ ପ୍ରଧାନ ମନ୍ଦିରମାନଙ୍କ ବିଷୟର ଆଲୋଚନାରେ ପ୍ରବୃତ୍ତ ହେବୁଁ ।

## ଓଡ଼ିଶାର ମନ୍ଦିରାଦି ନିର୍ମାଣରେ କେତେକ ଜ୍ଞାତବ୍ୟ କଥା ।

ଓଡ଼ିଶାର କାହିଁକି, ପୃଥିବୀର ସବୁଠି ଗୋଟିଏ ମନ୍ଦିର, ମସଜିଦ ବା ଗିର୍ଜା ବା ଉପାସନା ମନ୍ଦିର ବା ଯେ କୌଣସି ଗୃହ ନିର୍ମାଣରେ ଶିଳ୍ପିମାନେ କେତେଗୁଡ଼ିଏ ବିଷୟ ପ୍ରତି ଦୃଷ୍ଟି ଦିଅନ୍ତି; ସ୍ଥାନନିର୍ଦ୍ଦେଶ, ଦିଗନିର୍ଣ୍ଣୟ, ଉପାଦାନସଂଗ୍ରହ, ନିର୍ମାଣର କାଳ ବା ଋତୁ, ଏଥି ମଧ୍ୟରେ ପ୍ରଧାନ । ଓଡ଼ିଶାର ଶିଳ୍ପିମାନେ ଏ ସବୁ ପ୍ରତି କିପରି ଦୃଷ୍ଟି ରଖିଥିଲେ, ତାହା ବର୍ତ୍ତମାନ ଆମ୍ଭମାନଙ୍କର ଆଲୋଚ୍ୟ ।

(କ) ଭୂମିପରୀକ୍ଷା :—ମତ୍ସ୍ୟପୁରାଣ ଓ ଅଗ୍ନିପୁରାଣ ଆଦିରେ ଭୂମିପରୀକ୍ଷା ସମ୍ବନ୍ଧରେ କତିପୟ ନିୟମ ପ୍ରଦତ୍ତ ହୋଇଅଛି; ଗୃହ ବା ମନ୍ଦିର ନିର୍ମାଣ ପୂର୍ବରୁ ଭୂମିପରୀକ୍ଷା ପ୍ରଧାନ କର୍ତ୍ତବ୍ୟ; ବର୍ଣ୍ଣ ଓ ସ୍ୱାଦ ଭେଦରେ ପୁରାଣକାର-ମାନେ ଭୂମିକୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚାରି ଭାଗରେ ବିଭକ୍ତ କରିଅଛନ୍ତି । * ଶୁକ୍ଳବର୍ଣ୍ଣ ମୃତ୍ତିକା ବ୍ରାହ୍ମଣଜାତୀୟ, ରକ୍ତବର୍ଣ୍ଣ ମୃତ୍ତିକା କ୍ଷତ୍ରିୟ, ପୀତବର୍ଣ୍ଣ ମୃତ୍ତିକା ବୈଶ୍ୟ ଓ କୃଷ୍ଣବର୍ଣ୍ଣ ମୃତ୍ତିକା ଶୂଦ୍ରଜାତୀୟ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଜାତିର ମୃତ୍ତିକାମାନ ଯଥାକ୍ରମେ ମିଷ୍ଟ, କଷା, ଉଷ୍ଣ ଓ କଟୁ (ପିତା) । ବୈଶ୍ୟ ଓ ଶୂଦ୍ର ଉଭୟ ଜାତୀୟ ମୃତ୍ତିକା

---

* ଗନ୍ଧଭେଦରେ ମୃତ୍ତିକା ପରୀକ୍ଷା—

ଘୃତଗନ୍ଧା ଭବେଦ୍ ବ୍ରହ୍ମ ରକ୍ତଗନ୍ଧା ଚ କ୍ଷତ୍ରିୟା ।
କ୍ଷାରଗନ୍ଧା ଭବେଦ୍ ବୈଶ୍ୟ ଶୂଦ୍ରାଚ ବସ୍ତୁ (ମଦ୍ୟ) ଗନ୍ଧତ୍ୟା ।

ଏକପ୍ରକାର ସ୍ୱାଦଯୁକ୍ତ। ଇଷ୍ଟକ ପ୍ରସ୍ତୁତ ବା ଗୃହ ନିର୍ମାଣର ସ୍ଥାନ ନିରୂପଣରେ ଏହି ପ୍ରଭେଦ ଜ୍ଞାତବ୍ୟ; ବ୍ରାହ୍ମଣଜାତୀୟ ମୃତ୍ତିକା ଇଷ୍ଟକ ନିର୍ମାଣ ବା ଗୃହ ବା ମନ୍ଦିର ନିର୍ମାଣର ସ୍ଥାନ ପକ୍ଷରେ ଅତି ଉତ୍କୃଷ୍ଟ ଏବଂ ଶୂଦ୍ରଜାତୀୟ ମୃତ୍ତିକା ଅତି ନିକୃଷ୍ଟ, କ୍ଷତ୍ରିୟ ଓ ବୈଶ୍ୟ ଶ୍ରେଣୀର ମୃତ୍ତିକା ଦ୍ୱିତୀୟ ଓ ତୃତୀୟ ଶ୍ରେଣୀର ବୋଲି ଶାସ୍ତ୍ରକାରମାନେ ନିର୍ଦ୍ଧାରଣ କରିଅଛନ୍ତି । ଶୂଦ୍ରଜାତୀୟ ମୃତ୍ତିକାରୁ ମଦ୍ୟଗନ୍ଧ ତୁଲ୍ୟ ବାଷ୍ପ ମଧ୍ୟ ନିର୍ଗତ ହୁଏ । ଅଗ୍ନିପୁରାଣକାରଙ୍କ ମତରେ ଯେଉଁ ମୃତ୍ତିକା ଖନନ କଲେ ତାହାର ନିମ୍ନଦେଶରେ ଅସ୍ଥି ବା ଭସ୍ମ ବା ଅଙ୍ଗାର ଦୃଷ୍ଟ ହୁଏ, ସେ ସ୍ଥାନ ମନ୍ଦିର ବା ଗୃହନିର୍ମାଣପକ୍ଷରେ ସମ୍ପୂର୍ଣ୍ଣ ଅନୁପଯୋଗୀ । କାଶ୍ୟପ ଭୂମିନିର୍ଣ୍ଣୟ ପ୍ରସଙ୍ଗରେ ନିମ୍ନୋକ୍ତ ନିୟମ ପ୍ରଦର୍ଶନ କରିଅଛନ୍ତି । ମତ୍ସ୍ୟପୁରାଣକାର ମଧ୍ୟ ଏହି ନିୟମ ପ୍ରଦର୍ଶନ କରିଅଛନ୍ତି । ଯେଉଁ ସ୍ଥାନରେ ଗୃହ ବା ମନ୍ଦିର ନିର୍ମାଣ କରିବାକୁ ହେବ, ତାହାର କେନ୍ଦ୍ର ସ୍ଥାନରେ ଏକ ଘନହସ୍ତପରିମିତ (କହୁଣିଠାରୁ କାଣି ଆଙ୍ଗୁଠିର ଅଗ ପର୍ଯ୍ୟନ୍ତ ମାପ) ଗୋଟିଏ ଗର୍ତ୍ତ କର; ଗର୍ତ୍ତ ମଧ୍ୟରୁ ବାହାରିଥିବା ମାଟିକୁ ପୁନଶ୍ଚ ଗର୍ତ୍ତ ମଧ୍ୟରେ ପୂରାଅ; ଯେତିକି ମାଟି ବାହାରିଥିଲା, ସେତିକିରେ ଗର୍ତ୍ତ ପୂର୍ଣ୍ଣ ହୋଇ ମାଟି ବଳି ପଡ଼ିଲେ ସେ ଭୂମି ବ୍ରାହ୍ମଣଜାତୀୟ ଓ ନିର୍ମାଣ ପକ୍ଷରେ ଅତି ଉତ୍କୃଷ୍ଟ । ଯଦି ମାଟି ସମାନ ହେଲା ଅର୍ଥାତ୍ ଗର୍ତ୍ତ ପୂର୍ଣ୍ଣ ହୋଇ କିଛି ନ ବଳିଲା, ତେବେ ସେ ଭୂମି କ୍ଷତ୍ରିୟ ଓ ବୈଶ୍ୟ ଜାତିର; ଗୃହ ନିର୍ମାଣ ପକ୍ଷରେ ଏପ୍ରକାର ଭୂମି ମଧ୍ୟମପ୍ରକାର । ଯେଉଁ ମୃତ୍ତିକାଦ୍ୱାରା ଗର୍ତ୍ତ ପୂର୍ଣ୍ଣ ନ ହୋଇ ଗର୍ତ୍ତରୁ ବାହାରିଥିବା ମୃତ୍ତିକା ଊଣା ହୁଏ, ସେ ଭୂମି ଶୂଦ୍ରଜାତୀୟ; ଏପ୍ରକାର ଭୂମିରେ ଗୃହାଦି ନିର୍ମାଣ ଆଦୌ କର୍ତ୍ତବ୍ୟ ନୁହେ । * କିମ୍ବା ଏକ ଘନହସ୍ତ

---

* ପୂର୍ବଂ ଭୂମିଂ ପରୀକ୍ଷେତ ପଶ୍ଚାଦ୍ ବାସ୍ତୁଂ ପ୍ରକଳ୍ପୟେତ୍ ।
ଶ୍ୱେତା ରକ୍ତା ତଥା ପୀତା କୃଷ୍ଣା ଚୈବାନୁପୂର୍ବଶଃ ॥
ବିପ୍ରାଦେଃ ଶସ୍ୟତେ ଭୂମିରତଃ କାର୍ଯ୍ୟଂ ପରୀକ୍ଷଣଂ ।
ବିପ୍ରାଣାଂ ମଧୁର ସ୍ୱାଦା କଷାୟା କ୍ଷତ୍ରିୟସ୍ୟ ତୁ ॥

ପରିମିତ ଗୋଟିଏ ଗର୍ତ୍ତ କରି ସେ ଗର୍ତ୍ତକୁ କାଦୁଅରେ ଲେପିଦେବାକୁ ହେବ; ଗୋଟିଏ ସରାରେ ଘିଅ ଭର୍ତ୍ତି କରି ତାହା ଚାରି ପାଖରେ ଚାରିଟା ବଳିତା ଜଳାଇ ସେହି ଗର୍ତ୍ତର ନିମ୍ନଦେଶରେ ରଖିବାକୁ ହୁଏ; ଯଦି ବଳିତାଗୁଡ଼ିକ ସମାନ ଭାବରେ ଏକ ସମୟରେ ଜଳିଯାଏ, ତେବେ ସେ ମୃତ୍ତିକା ଗୃହ ବା ମନ୍ଦିର ନିର୍ମାଣ ପକ୍ଷରେ ଉତ୍କୃଷ୍ଟ ବୋଲି ବିବେଚନା କରିବାକୁ ହେବ । ଏ ଦୁଇ ନିୟମ ମଧ୍ୟରୁ ପ୍ରଥମୋକ୍ତ ନିୟମରେ ପ୍ରଦର୍ଶିତ ଉପାୟ ସହଜ ଓ ସୁବୋଧ ।

(ଖ) ଦିଗନିର୍ଣ୍ଣୟ—ମନ୍ଦିର ବା ଗୃହ ନିର୍ମାଣରେ ଦିଗନିର୍ଣ୍ଣୟ ଅନ୍ୟତମ କର୍ତ୍ତବ୍ୟ । ପ୍ରାଚୀନ ଯୁଗରେ ଦିଗନିର୍ଣ୍ଣୟ ଯନ୍ତ୍ର ବା Magnetic Compass ବା Prismatic Compass ନ ଥିଲା; କିନ୍ତୁ ଯେଉଁ ଶିଳ୍ପୀମାନେ ଏଡ଼େ ଏଡ଼େ ଦେଉଳ ନିର୍ମାଣ କରି ଶିଳ୍ପର ପରାକାଷ୍ଠା ଦେଖାଇ ଯାଇଅଛନ୍ତି, ସେମାନଙ୍କର ଦିଗନିର୍ଣ୍ଣୟ ଜ୍ଞାନ ନିଶ୍ଚୟ ଥିଲା ଓ ସେମାନେ ଦିଗନିର୍ଣ୍ଣୟ ସକାଶେ ନିଶ୍ଚୟ ଉପାୟ ଉଦ୍ଭାବନ କରିଥିଲେ । ଏ ବିଷୟରେ ସୂର୍ଯ୍ୟସିଦ୍ଧାନ୍ତରେ ଏବଂ ରାମରାଜଙ୍କର ହିନ୍ଦୁ ଶିଳ୍ପଶାସ୍ତ୍ରରେ ଆମ୍ଭେମାନେ ଏଥିର ନିୟମ ଦେଖୁଁ । ସୂର୍ଯ୍ୟସିଦ୍ଧାନ୍ତରେ ଲିଖିତ ହୋଇଅଛି—

"ଶିଳାତଳେଽମ୍ବୁ ସଂଶୁଦ୍ଧେ ବଜ୍ରଲେପେଽପି ବା ସମେ ।
ତତ୍ର ଶଙ୍କ୍ୱଙ୍ଗୁଳୈରିଷ୍ଟୈଃ ସମଂ ମଣ୍ଡଳମାଲିଖେତ୍ ॥

---

ବଷାଦ୍ୱେ ବଟ୍ଟ୍ରା ଛିଦ୍‌ବଦ୍ ବୈଶ୍ୟଶୂଦ୍ରସ୍ୟ ଶଂସ୍ୟତେ ।
କ୍ୱରନ୍ତ ମାତେଷ ବୈଗତେର୍ଣ୍ଣ ଷ୍ୱନ୍ନୂଲ୍ଲେସ୍ତ୍ର ତ ସର୍ବତଃ ।
ଘୃତମାମସରବସ୍ତୁଂ କୃତ୍ୱା ବର୍ତ୍ତି ଚତୁଷ୍ଟୟଂ ।
ଜ୍ୱାଲୟେଦ୍‌ଭୂପରୀକ୍ଷାର୍ଥଂ ପୂର୍ଣ୍ଣଂ ଭରେ ସର୍ବଦନ୍ମୁଙ୍ଗ ।
ଘପ୍ରା ପୂର୍ବାଦ ଗୃହ୍ଣୀଯ୍ୟାଦ୍‌ବର୍ଣ୍ଣାନାମନୁପୂର୍ବଶଃ ।
ବାସ୍ତୁ ସମୁଦ୍ଭବାନାମ ଘୋଷ୍ୟତେ ସର୍ବତସ୍ତୁ ଯଃ ।
ଶୁଭଦଃ ସର୍ବବର୍ଣ୍ଣାନାଂ ପ୍ରାସାଦେଷୁ ଗୃହେଷୁ ଚ ।
କ୍ୱରନ୍ତ ମାତ୍ରକଂ ଗର୍ତ୍ତଂ ପରୀକ୍ଷ୍ୟ ଖାତପୂରଣେ ।
ଅଧିକେ ଶ୍ରିୟମାପ୍ନୋତି ନ୍ୟୂନେ ହାନିଂ ସମେ ସମଂ । (ମତ୍ସ୍ୟପୁରାଣ)

ତନ୍ମଧ୍ୟେ ସ୍ଥାପୟେଚ୍ଛଙ୍କୁଂ କଳ୍ପନା ଦ୍ୱାଦଶାଙ୍ଗୁଳମ୍ ।
ତଚ୍ଛାୟାଗ୍ରଂ ସ୍ପୃଶେଦ୍ ଯତ୍ର ବୃତ୍ତେ ପୂର୍ବାପରାର୍ଦ୍ଧୟୋଃ ॥
ତତ୍ର ବିନ୍ଦୁଂ ବିଧାୟୈତୌ ବୃତ୍ତେ ପୂର୍ବାପରାଭିଧୌ ।
ତନ୍ମଧ୍ୟେ ତିମିନା ରେଖା କର୍ତ୍ତବ୍ୟା ଦକ୍ଷିଣୋତ୍ତରା ॥
ଯାମ୍ୟୋତ୍ତରଦିଶୋର୍ମଧ୍ୟେ ତିମିନା ପୂର୍ବପଶ୍ଚିମା ।
ଦିଙ୍‌ମଧ୍ୟମତ୍ସ୍ୟୈ ସଂସାଧ୍ୟା ବିଦିଶସ୍ତଦ୍ୱ ଦେବହି ॥

ସୂର୍ଯ୍ୟସିଦ୍ଧାନ୍ତ, ତୃତୀୟ ଅଧ୍ୟାୟ

ଅର୍ଥାତ୍ କୌଣସି ନିର୍ଦ୍ଦିଷ୍ଟ ଶଙ୍କୁକୁ ସମତଳ ଭୂମି ଉପରେ ସ୍ଥାପନ କର । ସେହି ଭୂମିର ସମତା ଜଳଦ୍ୱାରା ପରୀକ୍ଷା କରିବାକୁ ହେବ । କୌଣସି ନିର୍ଦ୍ଦିଷ୍ଟ ପରିମିତ ବ୍ୟାସ ନେଇ ସେହି ଶଙ୍କୁର ପାଦଦେଶକୁ କେନ୍ଦ୍ର କରି ଗୋଟିଏ ବୃତ୍ତ ଅଙ୍କନ କର । ଏହି ବୃତ୍ତ ମଧ୍ୟରେ ସୂର୍ଯ୍ୟର ଦୈନନ୍ଦିନ ଗତି ଅନୁସାରେ ସେହି ଶଙ୍କୁର ଛାୟା ପତିତ ହେବ । ସେହି ବୃତ୍ତର ପରିଧି ଉପରେ ସୂର୍ଯ୍ୟୋଦୟର କିୟତ୍‌କ୍ଷଣ ପରେ ଓ ସୂର୍ଯ୍ୟାସ୍ତର ଠିକ ସେତିକ ସମୟ ପୂର୍ବେ ଯେଉଁଠାରେ ଶଙ୍କୁର ଛାୟା ପତିତ ହୁଏ, ସେହି ସ୍ଥାନମାନଙ୍କରେ ଦୁଇଟି ଚିହ୍ନ ଦିଅ । ପୂର୍ବାହ୍ନରେ ଯେଉଁଠାରେ ଛାୟା ପଡ଼େ, ତାହା ପଶ୍ଚିମ ଓ ଅପରାହ୍ନରେ ଯେଉଁଠାରେ ଛାୟା ପଡ଼େ, ତାହା ପୂର୍ବ । ଏହି ପୂର୍ବ ପଶ୍ଚିମ ବିନ୍ଦୁଦ୍ୱୟକୁ ଯୋଗ କର । ଏ ପ୍ରତ୍ୟେକ ବିନ୍ଦୁକୁ କେନ୍ଦ୍ର କରି ପୂର୍ବ ଓ ପଶ୍ଚିମ ବିନ୍ଦୁକୁ ଯୋଗ କରିଥିବା ରେଖାକୁ ବ୍ୟାସ କଳ୍ପନା କରି ବୃତ୍ତ ଅଙ୍କନ କର । ଏହି ବୃତ୍ତମାନ ଅର୍ଥାତ୍ ପ୍ରଥମ ଓ ଦ୍ୱିତୀୟ ବୃତ୍ତମାନ ପରସ୍ପରକୁ ଯେଉଁ ବିନ୍ଦୁରେ କର୍ତ୍ତନ କରେ, ସେ ବିନ୍ଦୁଦ୍ୱୟକୁ ଯୋଗ କଲେ ଉତ୍ତର ଓ ଦକ୍ଷିଣ ଦିଗ ଜଣା ପଡ଼ିବ । ରାମରାଜଙ୍କ ପ୍ରଣୀତ 'ହିନ୍ଦୁଶିଳ୍ପ' ବା 'Architecture of Hindus' ପୁସ୍ତକରେ ବର୍ଣ୍ଣିତ ଦିଗନିର୍ଣ୍ଣୟର ଉପାୟ ଉଲ୍ଲିଖିତ ନିୟମର ଅନୁକରଣ ମାତ୍ର ।

ଓଡ଼ିଶାର ଅଧିକାଂଶ ମନ୍ଦିରର ମୁଖ ପୂର୍ବ ଦିଗକୁ, କିନ୍ତୁ ସ୍ଥାନବିଶେଷରେ ଏଥିର ବ୍ୟତିକ୍ରମ ମଧ୍ୟ ଆମ୍ଭେମାନେ ଦେଖିଅଛୁଁ ; ଯେଉଁ ଯେଉଁ ଦେଉଳରେ ଏଥିର ବ୍ୟତିକ୍ରମ ଦେଖିଅଛୁଁ , ସେହି ସେହି ଦେଉଳର ପ୍ରସଙ୍ଗ ଆଲୋଚନାରେ ତାହା ଉଲ୍ଲେଖ କରିବୁଁ । ପ୍ରାଚୀନ ଶିଳ୍ପିମାନେ ମନ୍ଦିରାଦିରେ ଦିକ୍‌ପତି ଆରାଧନା କରୁଥିଲେ; ଦଶ ଦିଗର ଦଶଗୋଟି ଅଧିପତି ଅଛନ୍ତି, ଯଥା— ଇନ୍ଦ୍ର ପୂର୍ବଦିଗର, ଅଗ୍ନି ଅଗ୍ନିକୋଣର, ଯମ ଦକ୍ଷିଣଦିଗର, ନିଋତି ନୈଋତ କୋଣର, ବରୁଣ ପଶ୍ଚିମଦିଗର, ବାୟୁ ବାୟୁକୋଣର, କୁବେର ଉତ୍ତର-ଦିଗର, ଈଶାନ ଐଶାନ୍ୟକୋଣର, ବ୍ରହ୍ମା ଓ ଅନନ୍ତ ଊର୍ଦ୍ଧ୍ୱ ଓ ଅଧର ଦିକ୍‌ପତି । ଓଡ଼ିଶାର ପ୍ରଧାନ ପ୍ରଧାନ ମନ୍ଦିରମାନଙ୍କରେ ଉଲ୍ଲିଖିତମତେ ନାନା ଦିଗରେ ଦିକ୍‌ପତି ମୂର୍ତ୍ତି ଓ ତାଙ୍କର ବାହନର ମୂର୍ତ୍ତି ସ୍ଥାପିତ ହୋଇଅଛି । ମନ୍ଦିର ନିର୍ମାଣ ପୂର୍ବରୁ ଦିକ୍‌ପତିଯାଗ ଅନୁଷ୍ଠିତ ହୁଏ । ସୁବର୍ଣ୍ଣ ବା ରୌପ୍ୟ-ନିର୍ମିତ ନାଗ (ଅନନ୍ତ) ଭିତ୍ତିର ନିମ୍ନଦେଶରେ ସ୍ଥାପିତ ହୁଏ । ଅଗ୍ନି-ପୁରାଣରେ ଦିକ୍‌ପତିଯାଗର ନିୟମ ଲିଖିତ ହୋଇଅଛି । ଓଡ଼ିଶାର ମନ୍ଦିରା-ଦିରେ ଦିକ୍‌ପତିମାନଙ୍କର ନିମ୍ନଲିଖିତ ବାହନ ଥିବାର ଦେଖାଯାଏ । ଇନ୍ଦ୍ରଙ୍କର ହସ୍ତୀ (ଐରାବତ), ଅଗ୍ନିଙ୍କର ଛାଗ ବା ମେଷ, ଯମଙ୍କର ମହିଷ, ନିଋତି ବାହନ ମନୁଷ୍ୟ, ବରୁଣଙ୍କର ମକର, ବାୟୁଙ୍କର ହରିଣ, କୁବେରଙ୍କର ପୁଷ୍ପଯାନ ବା କୁମ୍ଭ, ଈଶାନଙ୍କର ବୃଷଭ ବାହନ । ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଏଥିର ବ୍ୟତିକ୍ରମ ଦୃଷ୍ଟ ହୁଏ; ଯଥା—ମହୀଶୂରରେ କୁବେରଙ୍କ ବାହନ ଅଶ୍ୱ, ବଙ୍ଗ ଦେଶରେ ଧୂସରବର୍ଣ୍ଣ ଛାଗ, ଇତ୍ୟାଦି ।

[ଗ] ମନ୍ଦିର ନିର୍ମାଣର କାଳ— କେଉଁ ସମୟରେ ଗୃହାଦି ନିର୍ମାଣ ଲାଗି ବୃକ୍ଷାଦି କର୍ତ୍ତନ କରିବ, ବର୍ଷର କେଉଁ ଋତୁରେ କେଉଁ ଜାତୀୟ କାଠ ନିର୍ମାଣୋପଯୋଗୀ, ଏହା ପୁରାଣାଦିରେ ଓ 'ମାନସାର' ନାମକ ଶିଳ୍ପ-ଶାସ୍ତ୍ରରେ ବିଶେଷ ଭାବରେ ଆଲୋଚିତ ହୋଇଅଛି; କିନ୍ତୁ ଉତ୍କଳୀୟ ମନ୍ଦିରାଦିରେ ପ୍ରସ୍ତର କାର୍ଯ୍ୟ ଅଧିକ, କାଷ୍ଠର କାର୍ଯ୍ୟ ଅତି ସାମାନ୍ୟ,

ଲୋକଦେଶ୍ୱର ।

ସୁତରାଂ ସେ ପ୍ରସଙ୍ଗ ଆମ୍ଭମାନଙ୍କର ଅଧିକ ଆଲୋଚନା କରିବା ଆବଶ୍ୟକ ନାହିଁ । କେବଳ ମନ୍ଦିର ନିର୍ମାଣ ପକ୍ଷରେ କେଉଁ ସମୟ ଉତ୍କୃଷ୍ଟ, ତାହା ଆମ୍ଭେମାନେ ବିଚାର କରିବୁଁ ।

ମତ୍ସ୍ୟପୁରାଣରେ ଲିଖିତ ଅଛି—

ଚୈତ୍ରେ ବ୍ୟାଧିମବାପ୍ନୋତି ଯୋ ଗୃହଂ କାରୟେନ୍ନରଃ ।
ବୈଶାଖେ ଧନରତ୍ନାନି ଜ୍ୟେଷ୍ଠେ ମୃତ୍ୟୁସ୍ତଥୈବ ଚ ।
ଆଷାଢ଼େ ଭୃତ୍ୟରତ୍ନାନି ପଶୁବର୍ଗମବାପ୍ନୁୟାତ୍ ।
ଶ୍ରାବଣେ ମିତ୍ରଲାଭନ୍ତୁ ହାନିଂ ଭାଦ୍ରପଦେ ତଥା ।
ପତ୍ନୀନାଶଂ ଗୃହ୍ୟୁଗେ କାର୍ତ୍ତିକେ ଧନଧାନ୍ୟକଂ ।
ମାର୍ଗଶୀର୍ଷେ ତଥା ଭକ୍ତଂ ପୌଷେ ତସ୍କରଜଂ ଭୟଂ ॥
ଲାଭଞ୍ଚ ବହୁଶୋ ବିଦ୍ୟାଦଗ୍ନିଂ ମାଘେ ବିନିର୍ଦ୍ଦିଶେତ୍ ।
କାଞ୍ଚନଂ ଫାଲ୍‌ଗୁନେ ପୁତ୍ରାନିତି କାଳବଳଂ ସ୍ମୃତଂ ॥

ଲିଖିତ ଶ୍ଳୋକ ଅନୁସାରେ ଚୈତ୍ର, ଜ୍ୟେଷ୍ଠ, ଭାଦ୍ର, ଆଶ୍ୱିନ, ପୌଷ, ମାଘ ଭିନ୍ନ ମାସମାନ ଗୃହାରମ୍ଭ ପକ୍ଷରେ ଅପ୍ରଶସ୍ତ; ପୁନଶ୍ଚ ଅଶ୍ୱିନୀ, ରୋହିଣୀ, ମୂଳା, ଉତ୍ତରାଷାଢ଼ା, ଉତ୍ତରଭାଦ୍ର, ଉତ୍ତରଫାଲ୍‌ଗୁନୀ, ମୃଗଶିରା, ସ୍ୱାତୀ, ହସ୍ତା ଏବଂ ଅନୁରାଧା ନକ୍ଷତ୍ରଯୁକ୍ତ ଦିବସମାନ ଓ ମଙ୍ଗଳ ଓ ରବିବାର ଭିନ୍ନ ଅନ୍ୟ ବାରମାନ ଗୃହାରମ୍ଭ ପକ୍ଷରେ ଉତ୍କୃଷ୍ଟ* । 'ହୟଶୀର୍ଷ ପଞ୍ଚରାତ୍ର' ନାମକ ଗ୍ରନ୍ଥ ମତରେ ବର୍ଷାରମ୍ଭରୁ ଓ କୃଷ୍ଣପକ୍ଷରେ ପ୍ରଥମ ଦଶଦିନ ଓ ଶୁକ୍ଳ ପକ୍ଷର ଦ୍ୱିତୀୟ ଭାଗର ପାଞ୍ଚ ଦିନ ଏବଂ ଉଭୟ ପକ୍ଷର ଚତୁର୍ଥୀ, ନବମୀ ଓ

---

* ଅଶ୍ୱିନୀ ରୋହିଣୀ ମୂଲମୁତ୍ତରାତ୍ରୟମୈନ୍ଦବଂ ।
ସ୍ୱାତୀ ହସ୍ତାନୁରାଧା ଚ ଗୃହାରମ୍ଭେ ପ୍ରଶସ୍ୟତେ ।
ଆଦିତ୍ୟ ଭୌମ ବର୍ଜ୍ଜିତ ସର୍ବେ ବାରାଃ ଶୁଭାବହାଃ । ( ମତ୍ସ୍ୟପୁରାଣ )

ଚତୁର୍ଦ୍ଦଶୀ ତିଥିମାନ ଗୃହାରମ୍ଭ ପକ୍ଷରେ ବର୍ଜନୀୟ ।* ଆଧୁନିକ ସଭ୍ୟ ଆମ୍ଭେ-ମାନେ ଏ ସମସ୍ତଙ୍କୁ କୁସଂସ୍କାର ବୋଲି ସହଜରେ ଉଡ଼ାଇ ଦେଇ ପାରୁଁ; କିନ୍ତୁ ଯେଉଁମାନେ ଶିଳ୍ପ କାର୍ଯ୍ୟରେ ଜୀବନ ଅତିବାହିତ କରୁଥିଲେ, ସେମାନେ ଏଥିର ଆବଶ୍ୟକତା ବା ଅନାବଶ୍ୟକତା ଉପଲବ୍ଧି କରି ତାହା ପାଳନ କରୁଥିଲେ ।

(ଘ) ଉପାଦାନ—ଓଡ଼ିଶାର ପ୍ରଧାନ ପ୍ରଧାନ ମନ୍ଦିର ନିର୍ମାଣରେ ପ୍ରଧାନତଃ ପ୍ରସ୍ତର ବ୍ୟବହୃତ ହୋଇଥିବାର ଦେଖାଯାଏ । ଓଡ଼ିଶାର ମନ୍ଦିରମାନଙ୍କର ନିକଟବର୍ତ୍ତୀ ପ୍ରଦେଶରେ କୌଣସି କୌଣସି ସ୍ଥାନରେ ମନ୍ଦିରନିର୍ମାଣୋପଯୋଗୀ ପ୍ରସ୍ତରାଦି ନ ଥିଲେ ମଧ୍ୟ ସେହି ସେହି ମନ୍ଦିରମାନଙ୍କୁ ସୁଦୃଢ଼ କରିବାଲାଗି ବହୁଦୂର ଦୂରାନ୍ତରରୁ ପ୍ରସ୍ତର ଆନୀତ ହୋଇଥିବାର ଅନୁମିତ ହୁଏ, କିନ୍ତୁ ଭୁବନେଶ୍ୱରରେ ନିମ୍ନୋକ୍ତ ପ୍ରକାର ପ୍ରସ୍ତର ଅଦ୍ୟାପି ବର୍ତ୍ତମାନ ଥିବାର ଦେଖାଯାଏ । ଯେଉଁ ସମୟରେ ଓଡ଼ିଶାର ମନ୍ଦିରାଦି ନିର୍ମିତ ହୋଇଥିଲା, ସେତେବେଳେ ଏ ଦେଶରେ ପ୍ରସ୍ତର କର୍ତ୍ତନର ବୈଜ୍ଞାନିକ ପ୍ରକ୍ରିୟା ଉଦ୍ଭାବିତ ହୋଇ ନ ଥିଲା ବା ରେଳଗାଡ଼ି ମଧ୍ୟ ଏ ଦେଶକୁ ଆସି ନ ଥିଲା, ତଥାପି ଯେଉଁମାନେ ଅସୀମ କଷ୍ଟ ସ୍ୱୀକାର କରି ଏ କାର୍ଯ୍ୟରେ କୃତକାର୍ଯ୍ୟ ହୋଇଅଛନ୍ତି, ସେମାନେ ଧନ୍ୟ !

ପ୍ରକାରଭେଦରେ ପ୍ରସ୍ତର ନାନାପ୍ରକାର । ଯଥା—(୧) ତାଳମ୍ବା—(କ) ଶୁକ୍ଳତାଳମ୍ବା (ଖ) ରଙ୍ଗତାଳମ୍ବା; (୨) ସଜାସର୍ଣ୍ଣୀଆ—(କ) ରଙ୍ଗ (ଖ) ହଳଦିଆ; (୩) କନ୍ଦା—(କ) ଖଡ଼ିଅକନ୍ଦା (ଖ) ବଟଡ଼ାକନ୍ଦା; ଖଡ଼ିଅକନ୍ଦାର

---

* ଚାପ୍ତୁବର୍ମ ନଶୁରଶ୍ଚ ବର୍ଷାକାଲେ ଲଲାନଦା ।
କଷ୍ଟପକ୍ଷ ନିଷ୍ଫଳାନ୍ତ ଶୁକ୍ଳ ପଃକ୍ଷୀ ଦ୍ୱିତୀୟକେ ।
ଚତୁର୍ଥୀ ନବମୀ ବର୍ଜ୍ୟା ଷଷ୍ଠ୍ୟପି ଚତୁର୍ଦ୍ଦଶୀ ।
( ହୟଶୀର୍ଷ ପଞ୍ଚରାତ୍ର । )

ମଧ ଦୁଇଟି ପ୍ରକାର ଅଛି—ଝାଣ ଓ ନରମ; ବଗଡ଼ା କାନ୍ଧା ମଧ ଦୁଇପ୍ରକାର —ହଳୁ ଓ ମୋଟା; (୪) ମାଙ୍କଡ଼ା; (୫) ବଉଳମାଳା; (୬) ଲୁଣ୍ଡାପଥର; (୭) ମୁଗୁନୀପଥର । ଭୁବନେଶ୍ୱରର କୌଣସି କୌଣସି ମନ୍ଦିରର ( ଯଥା, ରାଜାରାଣୀ ) ବର୍ଣ୍ଣ ନାଲି ଦିଶେ; ଏଥିର ଦୁଇଟି କାରଣ; ପ୍ରଥମତଃ ଏ ଦେଉଳ-ମାନଙ୍କରେ ଯେଉଁ ପଥର ବ୍ୟବହୃତ ହୋଇଅଛି, ତାହା ରଙ୍ଗ ବା ନାଲି; ଦ୍ୱିତୀୟତଃ ମନ୍ଦିରମାନଙ୍କରେ ମଧ ଯେଉଁ ଲେପ ବା ରଙ୍ଗ ଦିଆ ଯାଇଅଛି, ତଦନୁସାରେ ତାହାର ବର୍ଣ୍ଣର ପାର୍ଥକ୍ୟ ହୁଏ । ପୂର୍ବକାଳରେ ମନ୍ଦିରାଦିରେ ଦୁଇପ୍ରକାର ଲେପ ବ୍ୟବହୃତ ହେଉଥିଲା, ଯଥା—ସୁଧାଲେପ ଓ ବଜ୍ରଲେପ । ଗବ, କଇଁଥ, ଶିମିଳିଫୁଲ, ବର, ବଉଳ ବୃକ୍ଷର ଛେଲି ଓ ଅର୍କ, ସଜପ, ଚୂଣ, କେନ୍ଦୁ, ଦେବଦାରୁରସ ପ୍ରଭୃତି ଏକତ୍ର ମିଶ୍ରିତ ହୋଇ ବଜ୍ରଲେପ ପ୍ରସ୍ତୁତ ହେଉଥିଲା; ଉତ୍ତପ୍ତ ଅବସ୍ଥାରେ ଦେବାଳୟ ଓ ପ୍ରାସାଦ, ଶିବଲିଙ୍ଗ ଓ କୂପ ପ୍ରଭୃତିରେ ଏ ଲେପ ପ୍ରୟୋଗ କଲେ ତାହା ସହସ୍ର ବର୍ଷ ପର୍ଯ୍ୟନ୍ତ ସ୍ଥାୟୀ ହୁଏ । ଲଙ୍କା ଓ ବେଲଫଳର ମଧାଂଶ ମିଶ୍ରିତ କରି ଏକପ୍ରକାର ଲେପ ପ୍ରସ୍ତୁତ ହେଉଥିଲା; ତାହା ସୁଧାଲେପ । ଆଜି କାଲି ମଧ ଭୁବନେଶ୍ୱରରେ ଏକପ୍ରକାର ଲେପ ପ୍ରସ୍ତୁତ ହୁଏ, ତାହାକୁ କବଳ କହନ୍ତି; ସେ କବଳ ନୂତନବସ୍ତ୍ରର ଗୁଣ୍ଡ, ତଳ ତେଲ ଓ ଚୂଣରେ ପ୍ରସ୍ତୁତ ହୁଏ । ଉଷ୍ଣ ତେଲରେ ଚୂଣ ଗୁଣ୍ଡ ଓ ନୂତନ ବସ୍ତ୍ରର ଗୁଣ୍ଡକୁ ପକାଇ ତାହାକୁ ପେଷଣ କରି କବଳ ପ୍ରସ୍ତୁତ କରନ୍ତି । କବଳ ଲିଙ୍ଗରାଜଙ୍କ ଶଙ୍କୁର ଗୃହ ପାଖର ଫାଙ୍କ ସ୍ଥାନମାନଙ୍କରେ ଓ ଲିଙ୍ଗରାଜ ମନ୍ଦିରର ପାର୍ଶ୍ୱବର୍ତ୍ତୀ ମନ୍ଦିରସ୍ଥ ବିଶ୍ୱକର୍ମା ମୂର୍ତ୍ତିର ନାସିକାଦିରେ ଦିଆଯାଇଅଛି । ଏ କବଳ ଶତବର୍ଷ ପର୍ଯ୍ୟନ୍ତ ସ୍ଥାୟୀ ହୁଏ । ଲିଙ୍ଗରାଜଙ୍କ ଶଙ୍କୁର ଫାଙ୍କସ୍ଥାନରେ ବେଲପତ୍ର ଆଦି ପଶି ସଡ଼ି ଦୁର୍ଗନ୍ଧ ହେବ ବୋଲି କବଳଦ୍ୱାରା ଫାଙ୍କସ୍ଥାନମାନ ନିରୋଧ କରାଯାଇଅଛି ।

ଦ୍ୱାରନିର୍ମାଣ କୌଶଳ ଦେଖିଲେ ମନେ ହୁଏ, କାଷ୍ଠ ନିଶ୍ଚୟ ବ୍ୟବହୃତ ହୋଇଥିବ । ବର୍ତ୍ତମାନ ସ୍ଥାନେ ସ୍ଥାନେ ଯେଉଁ ପୁରୁଣା ଦ୍ୱାରବନ୍ଧ ଦେଖାଯାଏ

ତାହା ଅତି ପ୍ରାଚୀନ ନୁହେ, ଅପେକ୍ଷାକୃତ ନୂତନ ବୋଲି ବୋଧ ହୁଏ; ତିନିଶତ ବର୍ଷରୁ ଅଧିକ ପ୍ରାଚୀନ ନୁହେ ।

ଓଡ଼ିଶାର ମନ୍ଦିରମାନଙ୍କରେ ଲୁହା ମଧ୍ୟ ସ୍ଥାନେ ସ୍ଥାନେ ବ୍ୟବହୃତ; ଅନନ୍ତ ବାସୁଦେବ ମନ୍ଦିରର ଭୋଗମଣ୍ଡପର ଉତ୍ତର ଓ ଦକ୍ଷିଣ ଦ୍ୱାରମାନଙ୍କରେ ଲୁହାର ଦ୍ୱାରପାର୍ଶ୍ୱ ଶାର୍ଦ୍ଦୂଳ ହୋଇଅଛି । ଶ୍ରୀଯୁକ୍ତ ମନୋମୋହନ ଗଙ୍ଗୋପାଧ୍ୟାୟ ମହାଶୟ ଖଣ୍ଡିଏ ପୁରୁଣା ଲୁହାକୁ ବିଶେଷଜ୍ଞଙ୍କ ଦ୍ୱାରା ପରୀକ୍ଷା କରାଇ ଦେଖି ଅଛନ୍ତି, ଆଧୁନିକ ଲୁହା ଅପେକ୍ଷା ତାହା ଅଧିକ ଶକ୍ତ ଓ ଅଧିକ ଭାରବହନ-କ୍ଷମ । ଆଜିକାଲି ବାହ୍ୟାଡ଼ମ୍ବରପୂର୍ଣ୍ଣ ସଭ୍ୟତାଲୋକପ୍ରାପ୍ତ ଆମ୍ଭେମାନେ ବାହାରର ରୂପ ଚିକଣ ପ୍ରତି ଯେପରି ମନୋଯୋଗୀ, ପ୍ରାଚୀନ କାଳରେ ତାହା ନ ଥିଲା । ସେମାନେ ଯେ ବାହ୍ୟାଡ଼ମ୍ବର ଦେଖୁ ନ ଥିଲେ, ତାହା ନୁହେ; କିନ୍ତୁ ସେମାନଙ୍କର ବାହ୍ୟାଡ଼ମ୍ବରପ୍ରିୟତା ସହିତ ଦୃଢ଼ତା ପ୍ରତି ପୂର୍ଣ୍ଣ ଲକ୍ଷ୍ୟ ଥିଲା; ସେଥିର ନିଦର୍ଶନସ୍ୱରୂପ ଭୁବନେଶ୍ୱର ଓ କୋଣାର୍କର ମନ୍ଦିରମାନ ଯୁଗଯୁଗାନ୍ତରବ୍ୟାପୀ ଆଘାତ ପ୍ରତିଘାତ ସହ୍ୟ କରି ସୁଦ୍ଧା ଦଣ୍ଡାୟମାନ ରହି-ଅଛି ।

ଏ ପ୍ରସଙ୍ଗରେ ଆମ୍ଭମାନଙ୍କୁ ଅନ୍ୟ ଗୋଟିଏ ବିଷୟ ଆଲୋଚନା କରିବାକୁ ହେବ । ଖଣ୍ଡଗିରି ଉଦୟଗିରି ଆଦିର ଗୁମ୍ଫା ଦେଖି ୟୁରୋପୀୟ ପ୍ରତ୍ନତତ୍ତ୍ୱ-ବିଦ୍‌ମାନେ ବିସ୍ମୟାଭିଭୂତ ହୋଇଅଛନ୍ତି; ୟୁରୋପୀୟମାନେ ଜାଣିଥିଲେ, ଗୋଳାଗୁଳି ବାରୁଦ ସାହାଯ୍ୟ ନ ନେଲେ ପର୍ବତ ଫଟାଇବା ଅସମ୍ଭବ । ସେମାନେ ଯେତେବେଳେ ଦେଖିଲେ, ଏଡ଼େ ବଡ଼ ପର୍ବତ ଦେହରେ ବାସୋପଯୋଗୀ ଏକତଳ, ଦ୍ୱିତଳ ପ୍ରାସାଦ ନିର୍ମିତ ହୋଇ ତାହା ନାନା କାରୁକାର୍ଯ୍ୟପୂର୍ଣ୍ଣ ହୋଇଅଛି, ସେମାନେ ବିସ୍ମୟାବିଷ୍ଟ ହେବା ସ୍ୱାଭାବିକ । ଡାକ୍ତର ହଣ୍ଟର ସାହେବ ଏହି ଗୁମ୍ଫାମାନ ପରିଦର୍ଶନ କରି ଲେଖିଗଲେ—"କୌଣସି କୌଣସି ଗୁମ୍ଫା ମନୁଷ୍ୟର ବାସ ଲାଗି ପ୍ରଶସ୍ତ, କିନ୍ତୁ କୌଣସିଟା କୁକୁର ରହିବା ଘରଠାରୁ ଛୋଟ ( Some are scarcely larger

than a dog's kennel ); ଓଡ଼ିଆ ଶିଳ୍ପୀମାନେ ବଡ଼ବର୍ଷବ୍ୟାପୀ ପରିଶ୍ରମଦ୍ୱାରା ଯେ ଏପରି ପ୍ରକାଣ୍ଡ ଗୁମ୍ଫା ନିର୍ମାଣ କରିଥିବେ, ତାହା ସେହି ଇଉରୋପୀୟ ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତମାନେ କଳ୍ପନା କରି ନ ପାରି Theory of evolution ବା 'ବିବର୍ତ୍ତନବାଦ'ର ଆଶ୍ରୟ ଗ୍ରହଣ କଲେ । ଯେଉଁ ଇଉରୋପୀୟ ସଭ୍ୟତା ଆମ୍ଭମାନଙ୍କୁ ପଙ୍ଗୁ କରି ପକାଇଅଛି, ଯେଉଁ ଇଉରୋପ କଥା କଥାକେ ଯନ୍ତ୍ର ଉଦ୍ଭାବନ କରି ମନୁଷ୍ୟର ଶକ୍ତିକୁ ଏପରି ହୀନ କରି ପକାଇଅଛି ଯେ, ଏଣିକି କଥା କହିବା, ଭାତ ଖାଇବା, ଶୋଇବା, ସନ୍ତାନାଦି ଉତ୍ପାଦନ କରିବା ପ୍ରଭୃତି ଯନ୍ତ୍ରବଳରେ ଚଳାଇପାରିଲେ ଆମ୍ଭେମାନେ ନିର୍ଦ୍ଦ୍ୱନ୍ଦ୍ୱରେ କାଳ କଟାନ୍ତୁ ବୋଲି ମନେ କରୁଅଛୁଁ, ସେହି ଇଉରୋପୀୟ ସଭ୍ୟତାଲୋକପ୍ରାପ୍ତ ପଣ୍ଡିତମାନେ ଓଡ଼ିଆ ଶିଳ୍ପୀର ଶାରୀରିକ ବଳରେ ଖଣ୍ଡଗିରି ଉଦୟଗିରି ପ୍ରଭୃତିର ପ୍ରଶସ୍ତ ଗହ୍ୱର ନିର୍ମିତ ହୋଇଥିବାର କଳ୍ପନା କରି ନ ପାରିବା ଅସମ୍ଭବ ନୁହେଁ । ସୁତରାଂ Theory of Evolution ବା 'ବିବର୍ତ୍ତନବାଦ'ର ଆଶ୍ରୟ ନେଇ ସେମାନେ ସିଦ୍ଧାନ୍ତ କଲେ, ସେହି କୁକୁରବାସୋପଯୋଗୀ ଗହ୍ୱର ଗୁଡ଼ିକ ଶିଳ୍ପୀମାନେ ଖୋଳିଥିଲେ । ବଡ଼ଗୁଡ଼ିକ ତାହାର ସ୍ୱାଭାବିକ ବର୍ଦ୍ଧନ ଶୀଳତାରେ ପ୍ରସାରିତ ହୋଇ କ୍ରମେ କ୍ରମେ ଏ ଅବସ୍ଥାକୁ ଆସିଅଛି । ଯଦି ଇଉରୋପୀୟ ପଣ୍ଡିତଙ୍କର ଏହି Evolution ବା ବିବର୍ତ୍ତନ ବାଦ ଠିକ୍ ହୁଏ, ତେବେ ଖଣ୍ଡଗିରି ଉଦୟଗିରି ଗହ୍ୱରମାନ କ୍ରମେ ପ୍ରସାର ଲାଭ କରି ୟୁରୋପ ପର୍ଯ୍ୟନ୍ତ ବିସ୍ତୃତ ହୋଇ ପାରେ ! ଏହାକୁ Evolution ବା ବିବର୍ତ୍ତନବାଦର ଅପବ୍ୟବହାର ଭିନ୍ନ ଆଉ କଣ ବୋଲିଯିବ ? ଶ୍ରଦ୍ଧେୟ ମନୋମୋହନ ଗଙ୍ଗୋପାଧ୍ୟାୟ ମହାଶୟ ଯଥାର୍ଥରେ କହିଅଛନ୍ତି—"ଖଣ୍ଡଗିରି ଓ ଉଦୟଗିରି ଗୁମ୍ଫାପ୍ରସଙ୍ଗରେ 'ବିବର୍ତ୍ତନବାଦ' ପ୍ରୟୋଗ କରିବାର ପ୍ରଧାନ ଉଦ୍ଦେଶ୍ୟ, କେବଳ ଉତ୍କଳୀୟ ଶିଳ୍ପ ବୈଦେଶିକ ପ୍ରଭାବରେ ଉନ୍ନତି ଲାଭ କରିଥିବା ପ୍ରତିପାଦନ କରିବା ଭିନ୍ନ ଅନ୍ୟ କିଛି ନୁହେଁ ।" * ୟୁରୋପୀୟ ପଣ୍ଡିତମାନଙ୍କର ବିବର୍ତ୍ତନବାଦର

---

* M. M. Ganguli's Orissa and her Remains p 63.

(Theory of Evolution) ଯୁକ୍ତି ଶୁଣିଲେ ଆମ୍ଭମାନଙ୍କର ମନେ ହୁଏ, ୟୁରୋପୀୟ ପଣ୍ଡିତମାନେ ଧନୀର ପ୍ରାସାଦ ନିକଟରେ ଦରିଦ୍ରର କୁଟୀର ଦେଖିଲେ ନିଶ୍ଚୟ କହିବେ, ଏ ଦରିଦ୍ରର କୁଟୀର ଅଧମ, ଧନୀର ପ୍ରାସାଦ ବିବର୍ତ୍ତନର ( Evolution ) ଫଳ । ଖଣ୍ଡଗିରି ଓ ଉଦୟଗିରି ପ୍ରଭୃତି ପର୍ବତମାନଙ୍କରେ ବୌଦ୍ଧ ଓ ଜୈନ ତପସ୍ୱୀମାନଙ୍କ ଲାଗି ଗୁମ୍ଫାମାନ ନିର୍ମିତ ହୋଇଥିଲା; ସେତେବେଳେ ଏ ଦେଶରେ ଯେଉଁ ଧର୍ମପ୍ରାଣତା ଥିଲା, ତାହା ଆଜି ଏ ଦେଶରେ କାହିଁ ? ସେ ଯୁଗରେ ଧନୀ ନିର୍ଦ୍ଧନ ନିର୍ବିଶେଷରେ ସମସ୍ତେ ଧର୍ମ ଲାଗି କୀର୍ତ୍ତି କରିବାକୁ ବ୍ୟାକୁଳ ହେଉଥିଲେ; ଆମ୍ଭେମାନେ ଅନୁମାନ କରୁଁ, ହଣ୍ଟର ସାହେବଙ୍କ ବର୍ଣ୍ଣିତ କୁକୁର କୁଡ଼ିଆ (dog's kennel) ଦରିଦ୍ରର କୀର୍ତ୍ତି ଓ ରାଜଭବନସମ ଗୁମ୍ଫାମାନ ରାଜା ମହାରାଜାଙ୍କ କୀର୍ତ୍ତି । ଏଥିରେ Evolution ବା ବିବର୍ତ୍ତନର ଲେଶ ମାତ୍ର ନାହିଁ ।

# ଦ୍ୱିତୀୟ ଅଧ୍ୟାୟ ।

## ଭୁବନେଶ୍ୱରବିଷୟକ ପ୍ରାଚୀନ ପୁସ୍ତକ ।

ଭୁବନେଶ୍ୱର ପ୍ରସଙ୍ଗ କତିପୟ ପୁରାଣ ଓ ଅନ୍ୟାନ୍ୟ ପୁସ୍ତକରେ ଉଲ୍ଲେଖ ହୋଇଥିବାର ଦେଖାଯାଏ । ଶିବପୁରାଣ, ଲିଙ୍ଗପୁରାଣ, ବ୍ରହ୍ମପୁରାଣ, ସ୍କନ୍ଦ-ପୁରାଣାନ୍ତର୍ଗତ ଉତ୍କଳଖଣ୍ଡରେ ଏକାମ୍ର ବର୍ଣ୍ଣନା ଓ ଅନନ୍ତ ବାସୁଦେବ ମାହାତ୍ମ୍ୟ ଦୃଷ୍ଟ ହୁଏ । ଏତଦ୍‌ବ୍ୟତୀତ ଏକାମ୍ର ପୁରାଣ, ଏକାମ୍ରଚନ୍ଦ୍ରିକା, କପିଳସଂହିତା, ସ୍ୱର୍ଣ୍ଣାଦ୍ରିମହୋଦୟ ପ୍ରଭୃତିରେ ମଧ୍ୟ ଭୁବନେଶ୍ୱରର ବିବରଣ ଲିଖିତ ଅଛି । ଶ୍ରୀତତ୍ତ୍ୱବୋଧିନୀ, ଲିଙ୍ଗରାଜପୂଜାପଦ୍ଧତି ପ୍ରଭୃତିରେ ମଧ୍ୟ ଏଥିର ଉଲ୍ଲେଖ ଅଛି । ଏ ପ୍ରସଙ୍ଗରେ ଆମ୍ଭମାନଙ୍କୁ ପୁରାଣ ସମ୍ବନ୍ଧରେ କିଞ୍ଚିତ୍ ଆଲୋଚନା କରିବାକୁ ହେବ । କାରଣ ତାହା ଭୁବନେଶ୍ୱର ମନ୍ଦିରର ସମୟ ନିରୂପଣ ପକ୍ଷରେ ଉପଯୋଗୀ ।

ପ୍ରଥମତଃ ପୁରାଣ ଅଠର ଖଣ୍ଡି; ଯଥା—ବ୍ରହ୍ମପୁରାଣ, ପଦ୍ମପୁରାଣ, ବିଷ୍ଣୁପୁରାଣ, ବାୟୁପୁରାଣ, ଭାଗବତ ପୁରାଣ, ନାରଦୀୟପୁରାଣ, ମାର୍କଣ୍ଡେୟପୁରାଣ, ଅଗ୍ନିପୁରାଣ, ଭବିଷ୍ୟତ୍‌ପୁରାଣ, ଲିଙ୍ଗପୁରାଣ, ବରାହପୁରାଣ, ସ୍କନ୍ଦପୁରାଣ, ବାମନପୁରାଣ, କୂର୍ମପୁରାଣ, ମତ୍ସ୍ୟପୁରାଣ, ଗରୁଡ଼ପୁରାଣ, ବ୍ରହ୍ମବୈବର୍ତ୍ତପୁରାଣ, ବ୍ରହ୍ମାଣ୍ଡପୁରାଣ । ଉଇଲସନ ସାହେବ ଅଷ୍ଟାଦଶ ପୁରାଣର ସମୟ ନିରୂପଣ କରିଅଛନ୍ତି; ତାଙ୍କ ମତ ଅନୁସାରେ କୌଣସି ପୁରାଣ ସହସ୍ର ବର୍ଷରୁ ଅଧିକ ପ୍ରାଚୀନ ନୁହେ । ଉଇଲସନ ସାହେବଙ୍କର ଏ ମତ ପାଠ କରି ସ୍ୱର୍ଗୀୟ ବଙ୍କିମ-ଚନ୍ଦ୍ର ଚଟ୍ଟୋପାଧ୍ୟାୟ ମହାଶୟ ଲେଖିଅଛନ୍ତି—"ବୋଧହୁଏ ଇଂରାଜୀ ପଢ଼ୁଆ ଯାହାର ବୁଦ୍ଧି ବିପର୍ଯ୍ୟୟ ଘଟିଯାଇଛି ତଦ୍ଭିନ୍ନ ଏମନ କୋନ ହିନ୍ଦୁ ନାଇ,

ଯିନ ଏଇ ସମୟ ନିର୍ଦ୍ଧାରଣ ଉପଯୁକ୍ତ ବଲିୟା ଗ୍ରହଣ କରିବେନ୍ ।"* ଡ଼ାକ୍ତର ଭଣ୍ଡାରକରଙ୍କ ମତାନୁସାରେ କବି କାଳିଦାସ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିଲେ । ଉଇଲସନ ସାହେବଙ୍କ ପ୍ରତିପାଦିତ ମତକୁ ଠିକ ବୋଲି ଗ୍ରହଣ କଲେ କାଳିଦାସଙ୍କ ମୃତ୍ୟୁ ପରେ ପୁରାଣମାନ ରଚିତ ହୋଇଥିଲା ବୋଲି ଜଣାଯିବ । କିନ୍ତୁ କାଳିଦାସଙ୍କ ରଚିତ ଗ୍ରନ୍ଥାଦିରେ ପୁରାଣରୁ ଉଲ୍ଲେଖ ଥିବାରୁ ଆମ୍ଭେମାନେ ମନେ କରୁଁ, ପୁରାଣ ତତ୍‌ପୂର୍ବରୁ ରଚିତ ହୋଇଥିଲା ।

ଉଇଲସନ ସାହେବଙ୍କ ମତ ଅନୁସାରେ ବ୍ରହ୍ମପୁରାଣ ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରେ ରଚିତ । ଶିବପୁରାଣ କାହାରି କାହାରି ମତରେ ବାୟୁ ପୁରାଣର ନାମାନ୍ତର; ଅନ୍ୟ କେହି କେହି ଶିବ ପୁରାଣକୁ ସ୍କନ୍ଦ ପୁରାଣର ଅନ୍ତର୍ଗତ ବୋଲି ମନେ କରନ୍ତି; ସେହି ବାୟୁପୁରାଣର ଯଥାର୍ଥ ସମୟ ଉଇଲସନ ସାହେବ ନିରୂପଣ କରି ପାରି ନାହାନ୍ତି; କିନ୍ତୁ ତାହା ଅତି ପ୍ରାଚୀନ ବୋଲି ଉଲ୍ଲେଖ କରିଅଛନ୍ତି । ସ୍କନ୍ଦପୁରାଣ ଭିନ୍ନ ଭିନ୍ନ ସମୟରେ ରଚିତ ପାଣ୍ଡୁଲିପି ପୁରାଣର ସଂଗ୍ରହ ବୋଲି ଉଇଲସନ ସାହେବ ନିର୍ଦ୍ଦେଶ କରିଅଛନ୍ତି । ଲିଙ୍ଗ ପୁରାଣ ଖ୍ରୀଷ୍ଟୀୟ ଅଷ୍ଟମ କିମ୍ବା ନବମ ଶତାବ୍ଦୀରେ ରଚିତ ବୋଲି ସେ ଅନୁମାନ କରନ୍ତି । ଏ ସମସ୍ତ ପୁରାଣରେ ବେଦବ୍ୟାସ ରଚୟିତା ବୋଲି ଉଲ୍ଲେଖ ଅଛି । ବ୍ୟାସର ବିଭିନ୍ନ ଅର୍ଥ ଲେଖକରଚିତ 'ଶ୍ରୀକୃଷ୍ଣ' ପୁସ୍ତକରେ ଦ୍ରଷ୍ଟବ୍ୟ । ଏକ ବ୍ୟାସଙ୍କ କର୍ତ୍ତୃକ ସମସ୍ତ ପୁରାଣ ରଚିତ ହୋଇଥିବା ଅସମ୍ଭବ ।

କପିଳସଂହିତା, ଏକାମ୍ରପୁରାଣ, ଏକାମ୍ରଚନ୍ଦ୍ରିକା, ସ୍ୱର୍ଣ୍ଣାଦ୍ରିମହୋଦୟ ପ୍ରଭୃତି ପୁରାଣମାନଙ୍କ ଅପେକ୍ଷା ଆଧୁନିକ ଗ୍ରନ୍ଥ ଓ ଭୁବନେଶ୍ୱରସ୍ଥ କୀର୍ତ୍ତିରାଜିର ପରବର୍ତ୍ତୀ ରଚନା । ଏତନ୍ମଧ୍ୟରେ କପିଳସଂହିତାର ରଚନାପ୍ରଣାଳୀ ଓ ବିଷୟବିଭାଗ ଦେଖିଲେ, ତାହା ସର୍ବାପେକ୍ଷା ପ୍ରାଚୀନ ବୋଲି ଅନୁମାନ କରାଯାଏ । ସ୍ୱର୍ଣ୍ଣାଦ୍ରିମହୋଦୟ ଏମାନଙ୍କ ମଧ୍ୟରେ ସର୍ବାପେକ୍ଷା ଆଧୁନିକ ।

---

* ବଙ୍କିମ ଚନ୍ଦ୍ର—'କୃଷ୍ଣ ଚରିତ୍ର'—୧୮ ଶ ପରିଚ୍ଛେଦ ।

ଭୁବନେଶ୍ୱର ।

ଏ ଗ୍ରନ୍ଥମାନ ଯଥାର୍ଥରେ କେଉଁ ଶତାବ୍ଦୀରେ କାହାଦ୍ୱାରା ରଚିତ, ତାହା ନିରୂପଣ କରିବା କଠିନ । ପଣ୍ଡିତ ଗୋବିନ୍ଦ ରଥ ମହାଶୟଙ୍କ ପ୍ରକାଶିତ ସ୍ୱର୍ଣ୍ଣାଦ୍ରିମହୋଦୟ ପୁସ୍ତକର ଶେଷାଂଶରେ ଥିବା 'ହିଙ୍କୁଳି' ଚରିତ ଅତି ଆଧୁନିକ ଓ କାଳ୍ପନିକ । ଲୋକମାନେ ସ୍ୱ ସ୍ୱ ସ୍ୱାର୍ଥ ସିଦ୍ଧି ଲାଗି ପ୍ରାଚୀନ ଗ୍ରନ୍ଥ-ମାନଙ୍କରେ ନବରଚିତ ଶ୍ଲୋକ ଯୋଗ କରିବାର ଏହା ଅନ୍ୟତମ ନିଦର୍ଶନ । ଏ ପ୍ରସଙ୍ଗ ଯଥାସ୍ଥାନରେ ଆଲୋଚିତ ହେବ ।

ଉତ୍କଳର ପ୍ରସିଦ୍ଧ ପୁଣ୍ୟତୀର୍ଥମାନଙ୍କର ପ୍ରସଙ୍ଗ ବର୍ଣ୍ଣନା କପିଳସଂହିତାର ପ୍ରଧାନ ଲକ୍ଷ୍ୟ । ଏକାମ୍ରପୁରାଣ ଦୁଇ ଭାଗରେ ବିଭକ୍ତ । ପ୍ରଥମାଂଶ ଓ ଦ୍ୱିତୀୟାଂଶ । ପ୍ରଥମାଂଶ ଦଶଟି ଅଧ୍ୟାୟରେ ବିଭକ୍ତ; ପ୍ରଥମାଂଶର ଦଶ ଅଧ୍ୟାୟ ବର୍ଣ୍ଣିତ ବିଷୟ ସହିତ ଭୁବନେଶ୍ୱର ପ୍ରସଙ୍ଗର ବିଶେଷ ସମ୍ପର୍କ ନାହିଁ । ଏ ଦଶ ଅଧ୍ୟାୟକୁ ଗ୍ରନ୍ଥର ଉପକ୍ରମଣିକା ବୋଲି ମନେ କରିବାକୁ ହେବ । ଏକାଦଶ ଅଧ୍ୟାୟଠାରୁ ଦ୍ୱାବିଂଶ ଅଧ୍ୟାୟ ପର୍ଯ୍ୟନ୍ତ ବାଇଶ ଅଧ୍ୟାୟରେ ଯଥାର୍ଥରେ ଭୁବନେଶ୍ୱର ପ୍ରସଙ୍ଗ ଦୃଷ୍ଟ ହୁଏ । 'ସ୍ୱର୍ଣ୍ଣାଦ୍ରିମହୋଦୟ' ଏକବିଂଶ ଅଧ୍ୟାୟରେ ସମାପ୍ତ । ଏ ପୁସ୍ତକର ଓ ଏକାମ୍ରପୁରାଣର ରଚନା ଓ ଶ୍ଲୋକ-ବିନ୍ୟାସ ମଧ୍ୟରେ ଏତେ ସାଦୃଶ୍ୟ ଅଛି ଯେ, ଗୋଟିଏ ଅନ୍ୟଟିର ଅନୁବୃତ୍ତି ବୋଲି ମନେ କରାଯାଇ ପାରେ । ଡାକ୍ତର ରାଜେନ୍ଦ୍ରଲାଲ ମିତ୍ରଙ୍କ ମତରେ 'ଏକାମ୍ର ଚନ୍ଦ୍ରିକା' 'ଏକାମ୍ରପୁରାଣ' ଜାତୀୟ ପୁସ୍ତକ । ଏଥିରେ ଭୁବନେଶ୍ୱର ବିଷୟରେ କତିପୟ ପ୍ରସଙ୍ଗ ସଂଗୃହୀତ ହୋଇଅଛି; ଏହା ଆଦିମ ବା ମୌଳିକ ରଚନା ନୁହେ । 'ଶ୍ରୀତତ୍ତ୍ୱବୋଧିନୀ' ଆମ୍ଭମାନଙ୍କ ଦୃଷ୍ଟିଗୋଚର ହୋଇ ନାହିଁ; ଲିଙ୍ଗରାଜ ପୂଜାପଦ୍ଧତିରେ ଲିଙ୍ଗରାଜଙ୍କ ପୂଜାର ପ୍ରଣାଳୀ ଓ ମନ୍ତ୍ରାଦି ପ୍ରଦତ୍ତ ହୋଇଅଛି । ଉଲ୍ଲିଖିତ ପୁସ୍ତକମାନ ପୌରାଣିକ ରୀତିରେ ରଚିତ; ସେଥିର ସାହାଯ୍ୟରେ ଭୁବନେଶ୍ୱରର ଇତିହାସ ସଂକଳନ ସହଜ ନ ହେଲେହେଁ, ସେଗୁଡ଼ିକ ଭୁବନେଶ୍ୱରର ଇତିହାସ ସଂଗ୍ରହ ପକ୍ଷରେ ଅତି ଉପାଦେୟ ।

ଅତି ପ୍ରାଚୀନ କାଳରୁ ବହୁଶତାବ୍ଦୀ ପର୍ଯ୍ୟନ୍ତ ଲିଖନପ୍ରଣାଳୀର ଅପ୍ରଚଳନ ହେତୁରୁ ପୁରାଣାଦିରେ ପରବର୍ତ୍ତୀ ରଚନା ପ୍ରକ୍ଷିପ୍ତ ହୋଇଥିବାର ଅନୁମିତ ହୁଏ । ବ୍ରହ୍ମପୁରାଣାଦିରେ ଭୁବନେଶ୍ୱରର ଯେଉଁ ବିବରଣ ଦୃଷ୍ଟ ହୁଏ, ତାହା ପ୍ରକ୍ଷିପ୍ତ କି ବ୍ରହ୍ମପୁରାଣ ରଚନା କାଳରୁ ସେ ଗ୍ରନ୍ଥରେ ବିଦ୍ୟମାନ ଅଛି, ତାହା ନିର୍ଣ୍ଣୟ କରିବା ବା ସେ ବିଷୟରେ ଅଭ୍ରାନ୍ତ ମତ ପ୍ରକାଶ କରିବା ସହଜ ନୁହେଁ; କିନ୍ତୁ ଏତିକି ନିଃସନ୍ଦେହରୂପେ ବୋଲିଯାଇ ପାରେ ଯେ, ବ୍ରହ୍ମପୁରାଣ ଯେତେ ପ୍ରାଚୀନ ଗ୍ରନ୍ଥ, ଭୁବନେଶ୍ୱରଙ୍କ ମନ୍ଦିରାଦି ସେତେ ପ୍ରାଚୀନ ନୁହେଁ; ଅତି ପ୍ରାଚୀନ କାଳରୁ ଏକାମ୍ରବନ ବିଦ୍ୟମାନ ଥାଇ ପାରେ ।

ତଦନନ୍ତର ମାଦଳାପାଞ୍ଜି—କିନ୍ତୁ ମାଦଳା ପାଞ୍ଜିରେ ଅନେକ ଘଟଣାର ଉଲ୍ଲେଖ ଥିଲେ ମଧ୍ୟ, ତାହା ବିଭିନ୍ନ ସମୟରେ, ବିଭିନ୍ନ ଲେଖକଙ୍କ ଦ୍ୱାରା, ବିଭିନ୍ନ ଭାବରେ ଲିପିବଦ୍ଧ ହୋଇଥିବାରୁ ସେ ସାଗର ମନ୍ଥନ କରି ପ୍ରକୃତତତ୍ତ୍ୱରତ୍ନ ସଂଗ୍ରହ କରିବା ସହଜ ନୁହେ । ପୁଣି ଐତିହାସିକ-ମାନଙ୍କ ମତରେ ମାଦଳାପାଞ୍ଜିବର୍ଣ୍ଣିତ ବୃତ୍ତାନ୍ତ ଅନ୍ୟାନ୍ୟ ସମସାମୟିକ ଘଟଣା ଦୃଷ୍ଟିରେ ଭ୍ରାନ୍ତ ବୋଲି ପ୍ରମାଣିତ ହେଉଅଛି । ଓଡ଼ିଶାର ଇତିହାସ ସଂକଳନ ବିଷୟରେ ଏଥିରୁ ଅନେକ ସାହାଯ୍ୟ ମିଳିଲେ ମଧ୍ୟ ଏହା ଉପରେ ସମ୍ପୂର୍ଣ୍ଣ ନିର୍ଭର କରାଯାଇ ନ ପାରେ ।

ଅନ୍ୟାନ୍ୟ ପୁସ୍ତକ ମଧ୍ୟରେ ଡାକ୍ତର ରାଜେନ୍ଦ୍ର ଲାଲ ମିତ୍ରପ୍ରଣୀତ Antiquities of Orissa., ଓମାଲିସାହେବଙ୍କ ରଚିତ Gazetteer of Puri Distirct, ଶ୍ରୀଯୁକ୍ତ ମନମୋହନ ଗଙ୍ଗୋପାଧ୍ୟାୟଙ୍କ Orissa and her Remains. ଓ ଶ୍ରୀଯୁକ୍ତ ଗୁରୁଦାସ ସରକାର ପ୍ରଣୀତ 'ମନ୍ଦିର କଥା' ଆଦିରେ ଭୁବନେଶ୍ୱର ବିଷୟରେ ଅନେକ ଜ୍ଞାତବ୍ୟ ବିଷୟ ଥିଲେ ମଧ୍ୟ ସେଥି ମଧ୍ୟରୁ କୌଣସିଟି ସମ୍ପୂର୍ଣ୍ଣ ନୁହେଁ; କିମ୍ବା କୌଣସି ଗ୍ରନ୍ଥକାର ଭୁବନେଶ୍ୱର ବିଷୟରେ ସମ୍ପୂର୍ଣ୍ଣ ଆଲୋଚନା କରି ଲେଖିବେ, ଏହା ମଧ୍ୟ ସମ୍ଭବପର ନୁହେ । ଉତ୍କଳ ଭାଷାରେ ଭୁବନେଶ୍ୱରର ଇତିହାସ ପ୍ରଣୟନର ଏହାହିଁ ପ୍ରଥମୋଦ୍ୟମ ।

# ତୃତୀୟ ଅଧ୍ୟାୟ ।

## ଏକାମ୍ର ବନ ।

### ଉତ୍କଳ ବାରାଣସୀ ।

ଭୁବନେଶ୍ୱରର ଆଦିନାମ ଏକାମ୍ର ବନ । ଭୁବନେଶ୍ୱରକୁ ଭୁବନେଶ୍ୱର-ବିଷୟକ ପୁସ୍ତକମାନଙ୍କରେ 'ଉତ୍କଳ ବାରାଣସୀ' ଆଖ୍ୟା ପ୍ରଦତ୍ତ ହୋଇଅଛି । ଭୁବନେଶ୍ୱରରେ ଆଜି ଯେଉଁ ଦେବମନ୍ଦିର ବା ପୁଷ୍କରିଣୀ ଆଦି ଆମ୍ଭମାନଙ୍କର ନୟନଗୋଚର ହେଉଅଛି, ତାହା ପ୍ରତିଷ୍ଠିତ ହେବା ପୂର୍ବେ ଏ କ୍ଷେତ୍ରର ନାମ ଏକାମ୍ର ବନ ଥିଲା । ଭୁବନେଶ୍ୱରବିଷୟକ ପୁସ୍ତକାଦି ପାଠ କଲେ, ତାହା ଅତି ପ୍ରାଚୀନ ତୀର୍ଥଭୂମି ବୋଲି ଜଣାଯାଏ, ମାତ୍ର ବାରାଣସୀ ଅପେକ୍ଷା ତାହା ପ୍ରାଚୀନ କି ଆଧୁନିକ, ତାହା ନିରୂପଣ କରିବା କଠିନ ।

ବାରାଣସୀ ବା କାଶୀ ପ୍ରସଙ୍ଗ ରାମାୟଣ, ମହାଭାରତ ଓ ଶିବପୁରାଣ, ଲିଙ୍ଗପୁରାଣ, ସ୍କନ୍ଦପୁରାଣ ଅନ୍ତର୍ଗତ କାଶୀଖଣ୍ଡ, ବାମନ, କୂର୍ମ, ମତ୍ସ୍ୟ ପୁରାଣ ପ୍ରଭୃତିରେ ଉଲ୍ଲେଖ ଦେଖାଯାଏ । ମହାଭାରତରେ କାଶୀ ପ୍ରସଙ୍ଗରେ ଉଲ୍ଲେଖ ଅଛି—"ବାରାଣସୀ କ୍ଷେତ୍ରରେ ମହାଦେବ ଦର୍ଶନ ଓ କପିଳହ୍ରଦରେ ସ୍ନାନ କଲେ ରାଜସୂୟ ଯଜ୍ଞର ଫଳ ଲାଭ ହୁଏ । ତତ୍ପରେ ଅବିମୁକ୍ତ ତୀର୍ଥରେ ଦେବାଧିଦେବ ମହାଦେବଙ୍କୁ ଦର୍ଶନ କଲେ ବ୍ରହ୍ମହତ୍ୟାଜନିତ ପାପ କ୍ଷୟ ହୁଏ !" କାଶୀର ଅପର ନାମ ଅବିମୁକ୍ତ, କିନ୍ତୁ ଅବିମୁକ୍ତେଶ୍ୱର ଓ ବିଶ୍ୱେଶ୍ୱର ଉଭୟଙ୍କ ପ୍ରାଧାନ୍ୟ ରକ୍ଷାଲାଗି ଏପରି ପୃଥକ୍ ଉଲ୍ଲେଖ ହୋଇଅଛି ।

ହରିବଂଶରେ ଲିଖିତ ଅଛି—'ମହାଦେବ ପାର୍ବତୀଙ୍କ ପାଣି ଗ୍ରହଣ କରି ଶ୍ୱଶୁରାଳୟରେ ବାସ କରୁଥିଲେ । ସେ ସମୟରେ ବାରାଣସୀ ବିଶେଷ ସମୃଦ୍ଧି-ଶାଳିନୀ ଥିଲା । ରାଜର୍ଷି ଦିବ୍ୟବ୍ୟାସ ସେଠାରେ ରାଜତ୍ୱ କରୁଥିଲେ । ଶିବାନୁ-ଚରବର୍ଗ ମହାଦେବଙ୍କ ଶ୍ୱଶୁରାଳୟ କୈଳାସ ପର୍ବତରେ ପାର୍ବତୀଙ୍କ ଆଜ୍ଞାନୁବର୍ତ୍ତୀ ହୋଇ ରହିଥାନ୍ତି । ପାର୍ବତୀଜନନୀ ମେନକା କନ୍ୟା ପ୍ରତି ଦିନେ ବିରକ୍ତ ହୋଇ କହିଲେ, "ତୁ କେଉଁ ଗର୍ବରେ ଏତେ ଅନୁଚର ଯୋଗିନ ଔଦ୍ଧତ୍ୟ ପ୍ରକାଶ କରୁଅଛୁ ?" ମେନକା ପାର୍ବତୀଙ୍କୁ ଭର୍ତ୍ସନା କରୁ କରୁ ଶିବ ନିନ୍ଦା କରିବାକୁ ଲାଗିଲେ । ପାର୍ବତୀ ନାରୀସ୍ୱଭାବସୁଲଭ କ୍ରୋଧରେ ଅଧୀର ହୋଇ ମହାଦେବଙ୍କୁ କହିଲେ—"ପ୍ରଭୋ ! ମୁଁ ଆପଣଙ୍କ ନିନ୍ଦା ଶ୍ରବଣରେ ଅକ୍ଷମ । ଆପଣ ଏଠାରୁ ମୋତେ ସ୍ୱଭବନକୁ ଘେନି ଚାଲନ୍ତୁ ।" ମହାଦେବ ତତ୍‌କ୍ଷଣାତ୍ ସ୍ୱୀୟ ଅନୁଚରବର୍ଗଙ୍କ ମଧ୍ୟରୁ ନିକୁମ୍ଭଙ୍କୁ ଆଦେଶ ଦେଲେ, "ତୁମ୍ଭେ ଯାଇଁ ବାରାଣସୀ ନଗରୀକୁ ମୋର ବାସୋପଯୋଗୀ କରିବା ନିମନ୍ତେ ତାହାକୁ ଜନଶୂନ୍ୟ କର । ସେଠାରେ ରାଜର୍ଷି ଦିବ୍ୟବ୍ୟାସ ରାଜା । ସାବଧାନତା ସହିତ କାର୍ଯ୍ୟ କରିବ ।" ନିକୁମ୍ଭ ବାରାଣସୀ ନଗରୀକୁ ଗମନ କରି ସ୍ୱପ୍ନରେ ଗୋଟିଏ ନାପିତକୁ କହିଲେ, "ଏ ନଗରର ସିଂହଦ୍ୱାରରେ ମୋହର ମୂର୍ତ୍ତି ସ୍ଥାପନ ପୂର୍ବକ ଆରାଧନା କଲେ ମୁଁ ତୋହର ମଙ୍ଗଳ ବିଧାନ କରିବି ।" ନାପିତ ସେହିପରି କଲା । ନିକୁମ୍ଭ ପୂଜା ପାଇ ଲୋକମାନଙ୍କୁ ଅଭୀଷ୍ଟ ବର ପ୍ରଦାନ କରିବାକୁ ଲାଗିଲେ; ମାତ୍ର ଦିବ୍ୟବ୍ୟାସଙ୍କ ରାଣୀ ପୁତ୍ରକାମନାରେ ତାହାଙ୍କୁ ବହୁତ ଆରାଧନା କଲେ ମଧ୍ୟ ତାହାଙ୍କୁ ବର ଦେଲେ ନାହିଁ । ଦିବ୍ୟବ୍ୟାସ ଏଥିରେ ବିରାଗାନ୍ୱିତ ହୋଇ ନିକୁମ୍ଭଙ୍କ ପୂଜା ବନ୍ଦ କରିଦେଲେ ଓ ନିକୁମ୍ଭଙ୍କ ମନ୍ଦିର ଭାଙ୍ଗି ପକାଇଲେ । ନିକୁମ୍ଭ ଏଥିରେ କ୍ରୁଦ୍ଧ ହୋଇ ବାରାଣସୀ ଜନଶୂନ୍ୟ ହେଉ ବୋଲି ଅଭିଶାପ ଦେଲେ । ବାରାଣସୀ ଜନ-ଶୂନ୍ୟ ହେଲା । ମହାଦେବ ସେଠାରେ ବାସ କରିବାକୁ ଲାଗିଲେ; ଦିବ୍ୟବ୍ୟାସ ଗୋମତୀ ତୀରକୁ ସ୍ୱୀୟ ରାଜଧାନୀ ଉଠାଇ ନେଲେ । ଏହି ବାରାଣସୀ ପ୍ରସଙ୍ଗରେ

ଭୁବନେଶ୍ୱର ।

ପ୍ରଥମାଂଶ ସହିତ ଉତ୍କଳଖଣ୍ଡବର୍ଣ୍ଣିତ ମହାଦେବଙ୍କର ଭୁବନେଶ୍ୱର ଆଗମନ ପ୍ରସଙ୍ଗର ବର୍ଣ୍ଣନା ପ୍ରାୟ ସମାନ ।

ଏକ ସମୟରେ ବାରାଣସୀରେ ବୌଦ୍ଧଧର୍ମ ପ୍ରବଳ ଥିଲା । ଅଦ୍ୟାପି ତହିଁର ଅନେକ ନିଦର୍ଶନ ମିଳେ; ବାରାଣସୀ ନିକଟବର୍ତ୍ତୀ ସାରନାଥ ବୌଦ୍ଧତୀର୍ଥ । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଫାହିୟାନ୍ ନାମକ ଚୀନ ପରିବ୍ରାଜକ ଓ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ହୁଏନ୍‌ସାଂ ବାରାଣସୀରେ ବୌଦ୍ଧକୀର୍ତ୍ତିର ଉଲ୍ଲେଖ କରିଅଛନ୍ତି । ପୁନଶ୍ଚ କେଉଁ ସମୟରେ କାଶୀରେ ହିନ୍ଦୁଧର୍ମର ପୁନରଭ୍ୟୁଦୟ ହେଲା, ତାହା ନିର୍ଣ୍ଣୟ କରିବା କଠିନ; ଯେଉଁ ସମୟରେ ହୁଏନ୍‌ସାଂ ବାରାଣସୀ ଆଗମନ କରିଥିଲେ—ଅର୍ଥାତ୍ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ବାରାଣସୀରେ ହିନ୍ଦୁଧର୍ମ ପ୍ରବଳ ଥିଲା । ସେ ସମୟରେ ବାରାଣସୀରେ ତିନ ସହସ୍ର ମାତ୍ର ବୌଦ୍ଧ ଥିଲେ । ହୁଏନ୍‌ସାଂ ଶତାଧିକ ହିନ୍ଦୁ ଦେବମନ୍ଦିର ଓ ପ୍ରାୟ ସହସ୍ରାଧିକ ଉପାସକ ଦେଖିଥିବାର ତାହାଙ୍କ ଭ୍ରମଣ-ବୃତ୍ତାନ୍ତରେ ଉଲ୍ଲେଖ କରିଅଛନ୍ତି । ମାଦଳାପାଞ୍ଜିର ବିବରଣକୁ ଯଥାର୍ଥ ବୋଲି ଗ୍ରହଣ କଲେ ୩୯୬ ଶକାବ୍ଦ ପୂର୍ବରୁ ବାରାଣସୀ ପ୍ରାଧାନ୍ୟ ଲାଭ କରିଥିଲା । କାରଣ ମାଦଳାପାଞ୍ଜିରେ ବର୍ଣ୍ଣିତ ଅଛି ଯେ, ୩୯୬ ଶକାବ୍ଦରେ ଯଯାତିକେଶରୀ ଭୁବନେଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ; ଭୁବନେଶ୍ୱର ବାରାଣସୀର ଅନୁକରଣରେ ରଚିତ; ସୁତରାଂ ଭୁବନେଶ୍ୱରର ମନ୍ଦିରାଦି ନିର୍ମାଣ ପୂର୍ବରୁ ବାରାଣସୀରେ ଦେବମନ୍ଦିରାଦି ନିଶ୍ଚୟ ବିଦ୍ୟମାନ ଥିଲା ।

ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ହୁଏନ୍‌ସାଂ ବାରାଣସୀରେ ଶତହସ୍ତପରିମିତ ବିଶ୍ୱେଶ୍ୱରଲିଙ୍ଗଙ୍କ ତାମ୍ରମୂର୍ତ୍ତି ଦର୍ଶନ କରିଥିଲେ । ବର୍ତ୍ତମାନ ସେ ଶତହସ୍ତ-ପରିମିତ ଲିଙ୍ଗ ନାହିଁ । ଐତିହାସିକମାନେ ଅନୁମାନ କରନ୍ତି, ସାହାବୁଦ୍ଦିନ ଘୋରି ବାରାଣସୀ ଲୁଣ୍ଠନ କଲାବେଳେ ଏ ଲିଙ୍ଗକୁ ଅପହରଣ କରିଅଛନ୍ତି ଓ ବର୍ତ୍ତମାନ ଲିଙ୍ଗ ହିନ୍ଦୁମାନଙ୍କ କର୍ତ୍ତୃକ ପରବର୍ତ୍ତୀ କାଳରେ ପ୍ରତିଷ୍ଠିତ ।

ବର୍ତ୍ତମାନ ବିଶ୍ୱେଶ୍ୱରମନ୍ଦିର ଶତାଧିକ ବର୍ଷ ପୂର୍ବେ ନିର୍ମିତ । ବିଶ୍ୱେଶ୍ୱରମନ୍ଦିରର ଅନତିଦୂରସ୍ଥ ଆଓରଙ୍ଗଜେବଙ୍କ ନିର୍ମିତ ମସ୍‌ଜିଦ୍ ସ୍ଥାନରେ ପୂର୍ବେ ବିଶ୍ୱେଶ୍ୱର ମନ୍ଦିର ଥିଲା । ଏବିଷୟରେ ଅଧିକ ଆଲୋଚନା ନିଷ୍ପ୍ରୟୋଜନ ।

## ଏକାମ୍ର ।

ସ୍କନ୍ଦପୁରାଣର ଉତ୍କଳଖଣ୍ଡର ବର୍ଣ୍ଣନା ଅନୁସାରେ ଏକାମ୍ରବନ ଉତ୍କଳ-ଦେଶସ୍ଥ ନୀଳାଚଳର ଦୁଇ ଯୋଜନ ଉତ୍ତରଦିଗରେ ଅବସ୍ଥିତ । ଅତି ପ୍ରାଚୀନ କାଳରେ ଏହି ସ୍ଥାନରେ ମୁକ୍ତିଦାୟକ ଗୋଟିଏ ଆମ୍ରବୃକ୍ଷ ଥିଲା । * ଯେଉଁଠାରେ ଏହି ଏକମାତ୍ର ଆମ୍ରବୃକ୍ଷ ଥିବାରୁ ତାହାର ନାମ ଏକାମ୍ର ବନ । ଏ ବୃକ୍ଷ ଅତ୍ୟନ୍ତ ଉଚ୍ଚ, ସୁନ୍ଦର ଶାଖାବିଶିଷ୍ଟ ଏବଂ ନବ ନବ କିଶଳୟ ଓ ପଲ୍ଲବରେ ଶୋଭିତ । † ଏକାମ୍ରଚନ୍ଦ୍ରିକା, କପିଳସଂହିତା ପ୍ରଭୃତିର ବିବରଣ ଅନୁସାରେ ଏହି ଏକାମ୍ର କାନନର ଚତୁଃସୀମା ଏକକ୍ରୋଶବ୍ୟାପୀ । କପିଳ-ସଂହିତାକାର କହନ୍ତି—

> "ସମନ୍ତାତ୍ କ୍ରୋଶମାତ୍ରେ ଚ କୋଟିଲିଙ୍ଗୋବୃତା ମହୀ ।
> କ୍ଷେତ୍ରସ୍ୟ ପୂର୍ବଦକ୍ଷେ ଚ ପଶ୍ଚିମେ ଚୋତ୍ତରେ ତଥା ॥
> କ୍ରୋଶେନ ମଣ୍ଡଳାକାରଂ କୁର୍ଯ୍ୟାତ୍ କ୍ଷେତ୍ରପ୍ରଦକ୍ଷିଣଂ ।
> କ୍ଷେତ୍ରମେତତ୍ ସମାବିଷ୍ଟଂ ଚକ୍ରାକାରଂ ଶୁଭଂ ମୁନେ ॥"

---

* ସ ବର୍ତ୍ତତେ ନୀଲଗିରେର୍ଯୋଜନେନୋତ୍ତରୀକୃତେ ।
ଇଦଂ ତଦେକାମ୍ରକବନଂ କ୍ଷେତ୍ରଂ ଗୌରୀପତେର୍ବିଭୋଃ ।
ଉତ୍କଳଖଣ୍ଡ ।

† ଏକାମ୍ରବୃକ୍ଷସ୍ତତ୍ରାସୀତ୍ ପୁରାକଳ୍ପେ ତୁ ମୁକ୍ତିଦଃ ।
ତତ ଏବୋ ଯତଶ୍ଚାମ୍ରସ୍ତସ୍ମାଦେକାମ୍ରକଂ ବନଂ ।
ମହୋଚ୍ଛ୍ରାୟଃ ସୁଶାଖୀ ଚ ନବନବ୍ରମପଲ୍ଲବଃ ।
ଧର୍ମାର୍ଥମୋକ୍ଷଦାମାତ୍ର ଯସ୍ୟ ବୃକ୍ଷ ଫଳାନି ଚ ॥
କପିଳସଂହିତା ।

ପୁନଶ୍ଚ—ଖଣ୍ଡାଚଳଂ ସମାସାଦ୍ୟ ଯଦାସ୍ତେ କୁଣ୍ଡଳେଶ୍ୱରଃ ।
ଆସାଦ୍ୟ ବଳଦ୍ୱା ଦେବୀ ବହ୍ନରଙ୍ଗେଶ୍ୱରାବଧି ॥

କ୍ଷେତ୍ରର ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣରେ ଏକକୋଶବ୍ୟାପୀ ମଣ୍ଡଳାକାର କ୍ଷେତ୍ର ପ୍ରଦକ୍ଷିଣ ବିଧି; ଖଣ୍ଡଗିରିଠାରୁ କୁଣ୍ଡଳେଶ୍ୱର ପର୍ଯ୍ୟନ୍ତ ଏବଂ ବଳଦ୍ୱା ଦେବୀଙ୍କଠାରୁ ବହ୍ନରଙ୍ଗେଶ୍ୱର ପର୍ଯ୍ୟନ୍ତ ମଣ୍ଡଳାକାର ଭୂମି ଏକାମ୍ରବନ ।

ଏଥିର ସମୁଦାୟ ଦୈର୍ଘ୍ୟ ପ୍ରସ୍ଥ ତିନି ଯୋଜନ ବା ବାର ମାଇଲ; ଏଥି ମଧ୍ୟରେ ଭୁବନେଶ୍ୱର, ପୋଖରୀପୁଟା, କୋଚିଲାପୁଟ, ବାହାଡ଼ଲପୁର, ପୁରକନା, ବୋଁତଣ୍ଡା, କଣ୍ଟିଲୋ, କୁହା, ବାପକାଠ, ରଥିଜମା, ହରିପୁର, କଣ୍ଠାଶାନିଆ, ଗଡ଼ ଶ୍ରୀରାମପୁର, ଦୁର୍ଗାଦାସପୁର, ଶିଶୁପାଳ ଗଡ଼ ପ୍ରଭୃତି ପଇଁଚାଳିଶ ଖଣ୍ଡି ଗ୍ରାମ ଅଛି । ଏକାମ୍ରପୁରାଣ ଭିନ୍ନ କପିଳସଂହିତାଦି ଅନ୍ୟାନ୍ୟ ପୁରାଣକାରଙ୍କ ମତରେ ଭୁବନେଶ୍ୱରର ତୀର୍ଥଯାତ୍ରୀମାନଙ୍କୁ ଏହି ବାର ମାଇଲ ପ୍ରଦକ୍ଷିଣ କରିବାକୁ ହେବ । ଏକାମ୍ରପୁରାଣ ମତରେ ଲିଙ୍ଗରାଜ ଦେଉଳର ଚତୁଃପାର୍ଶ୍ୱବର୍ତ୍ତୀ ଏକମାଇଲ ବ୍ୟାସାର୍ଦ୍ଧ ପରିମିତ ସ୍ଥାନହିଁ ତୀର୍ଥ-ପ୍ରଦକ୍ଷିଣଯୋଗ୍ୟ ।




୧—ବଳଦ୍ୱାଦେବୀ, ୨—କୁଣ୍ଡଳେଶ୍ୱର, ୩—ଯଦୁପୁର, ୪—ଖଣ୍ଡଗିରି, ୫—କୁହା, ୬—ଧବଳଗିରି, ୭—ଭୁବନେଶ୍ୱର ।

ସ୍କନ୍ଦପୁରାଣ ମତରେ ଏକାମ୍ର କ୍ଷେତ୍ରର ଅପର ନାମ 'ଶାମ୍ଭବ କ୍ଷେତ୍ର'; କାରଣ ପୂର୍ବକାଳରେ ଭଗବାନ୍ ଶମ୍ଭୁ ଏ କ୍ଷେତ୍ର ନିର୍ମାଣ କରିଥିଲେ।* ଭୁବନେଶ୍ୱରବିଷୟକ ବିଭିନ୍ନ ପୁସ୍ତକରେ ଏଠାରେ ଶିବକ୍ଷେତ୍ର ପ୍ରତିଷ୍ଠାର ବିଭିନ୍ନ ପ୍ରକାର ବିବରଣ ଦୃଷ୍ଟ ହୁଏ ।

କପିଳସଂହିତାର ବିବରଣ ଅନୁସାରେ ବାରାଣସୀ ଅତି ଜନାକୀର୍ଣ୍ଣ ହୋଇ ପଡ଼ିବାରୁ ମହାଦେବଙ୍କ ତପସ୍ୟାରେ ବ୍ୟାଘାତ ଜନ୍ମିଲା । ଦିନେ ମହର୍ଷି ନାରଦ ମହାଦେବଙ୍କ ସହିତ କାଶୀଧାମରେ ସାକ୍ଷାତ୍ କରିବାରୁ ମହାଦେବ ତାଙ୍କୁ କହିଲେ—"ହେ ମହର୍ଷି, ଏ କାଶୀଧାମ ଶୀଘ୍ର ବିନଷ୍ଟ ହେବ; ମୁଁ ଏଠାରେ ଅଧିକକାଳ ଅବସ୍ଥାନ କରି ପାରିବି ନାହିଁ । ପୃଥିବୀରେ କେଉଁଠାରେ ମୋର ବାସୋପଯୋଗୀ ସ୍ଥାନ ଅଛି ?" ତହୁଁ ନାରଦ ତାଙ୍କୁ ଏକାମ୍ର ବନର ସନ୍ଧାନ କହିଦେଲେ । ସେ କହିଲେ—"ସେଠାରେ ଜନାର୍ଦ୍ଦନ ଅନନ୍ତଶୟନରେ ରହି ସୃଷ୍ଟି ସ୍ଥିତି ଲୟ କରୁଅଛନ୍ତି । ସେହି ଅନନ୍ତ ଜନାର୍ଦ୍ଦନ ଓ ମୋ ଭିନ୍ନ ଅନ୍ୟ କେହି ଏ ଗୋପନୀୟ ସ୍ଥାନର ବିଷୟ ଅବଗତ ନାହାନ୍ତି ।" ତଦନନ୍ତର ମହାଦେବ ବୃଷଭ ବାହନରେ ଏକାମ୍ର ବନରେ ଉପସ୍ଥିତ ହୋଇ ଜନାର୍ଦ୍ଦନ ବିଷ୍ଣୁଙ୍କୁ ଅନେକ କଥା ଅଭିମାନ କରି କହିଲେ ଏବଂ ବାସଭୂମି ଲାଗି ସ୍ଥାନ ପ୍ରାର୍ଥନା କଲେ । ବିଷ୍ଣୁ କହିଲେ, "ମହାଦେବ, ତୁମ୍ଭେ ପୁନଶ୍ଚ କାଶୀଧାମକୁ ଫେରି ନ ଯିବାର ପ୍ରତିଜ୍ଞା କଲେ, ତୁମ୍ଭଙ୍କୁ ଏଠାରେ ସ୍ଥାନ ଦାନ କରି ପାରେ ।" ଶଙ୍କର କହିଲେ—"ମୁଁ କପିଳ ମଣିକର୍ଣ୍ଣିକା ଓ ଜାହ୍ନବୀ ନଦୀ ପରିତ୍ୟାଗ କରି ଏକାବେଳକେ

---

*ଇଦ୍ଧ୍ୟମେତତ୍ ପୁରା କ୍ଷେତ୍ରଂ ମହାଦେବେନ ନିର୍ମିତଂ ।
ତତ ସାକ୍ଷାତ୍ ଭବ ହାଡ଼ଃ ସ୍ଥାପିତଃ ପରମେଷ୍ଠିନା ॥
ଯଦେତଚ୍ଛାମ୍ଭବଂ କ୍ଷେତ୍ରଂ ଚମତ୍ପାଦାଣତଂ ଶୁଭଂ ।
ସ୍କନ୍ଦପୁରାଣ ।

ଏଠାରେ ରହିବ ?" ବାସୁଦେବ ଉତ୍ତର କଲେ—"ମହେଶ୍ୱର, ଏହି
ପାପନାଶିନୀ ହ୍ରଦ ମଣିକର୍ଣ୍ଣିକା ତୁଲ୍ୟ; ଅଗ୍ନିକୋଣରେ ମମ ପାଦନିଃସୃତା
ଗଙ୍ଗା ଯମୁନା ପ୍ରବାହିତା; ଏଠାରେ ଆହୁରି ଅଦୃଶ୍ୟ ଗୁପ୍ତ ତୀର୍ଥ ଅଛି; ତୁମ୍ଭେ
ତାହା କ୍ରମେ ଅବଗତ ହେବ ।" ମହାଦେବ ବିଷ୍ଣୁଙ୍କ କଥାରେ ସନ୍ତୋଷ
ଲାଭ କରି ଏକାମ୍ର ବନରେ ରହିବାଲାଗି ପ୍ରତିଶ୍ରୁତ ହେଲେ । ଆମ୍ଭମାନଙ୍କ
ମତରେ ବାରାଣସୀ କ୍ଷେତ୍ରର ମାହାତ୍ମ୍ୟ ହ୍ରାସ ଓ ଏକାମ୍ରର ପ୍ରାଧାନ୍ୟ ବିସ୍ତାର
ଲାଗି ଏ ସମସ୍ତ ଉପାଖ୍ୟାନର ସୃଷ୍ଟି ।

ଶିବପୁରାଣଲିଖିତ ବୃତ୍ତାନ୍ତ ଅନୁସାରେ—ଦିନେ ପାର୍ବତୀ ମହାଦେବଙ୍କୁ
କହିଲେ, "ସ୍ୱାମିନ୍ ! ଏ କାଶୀଧାମ ତୁଲ୍ୟ ଆପଣଙ୍କର ଅନ୍ୟ ପ୍ରିୟଭୂମି
କେଉଁଠାରେ ଅଛି ?" ଶଙ୍କର ପାର୍ବତୀଙ୍କୁ ପ୍ରେମାଲିଙ୍ଗନ କରି କହିଲେ,
"ପ୍ରିୟେ, ମୁଁ ତୁମ୍ଭ ପ୍ରତି ବିଶେଷ ସନ୍ତୁଷ୍ଟ ହୋଇଅଛି; ତେଣୁ ପୃଥିବୀ ମଧ୍ୟସ୍ଥ
ମୋର ଗୁପ୍ତ ପ୍ରିୟ ସ୍ଥାନ ବିଷୟ ତୁମ୍ଭଙ୍କୁ କହୁଅଛି—ଦକ୍ଷିଣ ସମୁଦ୍ର-
ନିକଟବର୍ତ୍ତୀ ଉତ୍କଳ କ୍ଷେତ୍ର ମଧ୍ୟରେ ବିନ୍ଧ୍ୟପାଦନିଃସୃତା ଗନ୍ଧବତୀ ନଦୀ
ପ୍ରବାହିତା । ଏହି ଗନ୍ଧବତୀ ତୀରରେ ପୁଣ୍ୟକ୍ଷେତ୍ର ଏକାମ୍ର ମୋର ଅତି
ପ୍ରିୟଭୂମି । ଏହି କାନନ ସର୍ବୈଶ୍ୱର୍ଯ୍ୟସମ୍ପନ୍ନ, ଷଡ଼୍‌ଋତୁପରିସେବିତ ଏବଂ
କୈଳାସ ସମ ସମୃଦ୍ଧିଶାଳୀ । ଏହି କାନନ କୋଟିଲିଙ୍ଗବିଭୂଷିତ ।" ସେହି
ପରମରମଣୀୟ କ୍ଷେତ୍ରର ବିବରଣ ଶ୍ରବଣ କରି ପାର୍ବତୀ ତାହା ଦର୍ଶନ
କରିବାକୁ ବିଶେଷ ଆଗ୍ରହ ପ୍ରକାଶ କଲେ । ମହାଦେବ କହିଲେ,
"ପ୍ରିୟେ, ସେହି କ୍ଷେତ୍ରକୁ ତୁମ୍ଭଙ୍କୁ ଏକାକିନୀ ଛଦ୍ମବେଶରେ ପ୍ରସ୍ଥାନ
କରିବାକୁ ହେବ । ତୁମ୍ଭେ ଯେଉଁ ରୂପ ଧାରଣ କରିବ, ମୁଁ ସେହି ରୂପରେ
ତୁମ୍ଭ ସହିତ ବିହାର କରିବି ।" ଶଙ୍କରାଦେଶରେ ପାର୍ବତୀ ସିଂହବାହିନୀ ହୋଇ
ଏକାମ୍ରକ୍ଷେତ୍ରକୁ ଗମନ କଲେ । ସେଠାରେ ସିଦ୍ଧଦେବର୍ଷିସେବିତ, ନାନା
ତରୁଗୁଳ୍ମାଦିପରିଶୋଭିତ, ବିବିଧ ବିହଙ୍ଗସମାକୁଳ ସ୍ୱର୍ଣ୍ଣକୂଟ ଦେଖିଲେ ।
ଆହା ! ସେ କ୍ଷେତ୍ର କି ମନୋହର ! ଦେବୀ ସେଠାରେ ଶ୍ୱେତ କୃଷ୍ଣ ଅରୁଣ
ବର୍ଣ୍ଣାଭ ଲିଙ୍ଗ ଦର୍ଶନ କଲେ ଓ ସେଠାରେ ତ୍ରିଭୁବନେଶ୍ୱରଙ୍କୁ ନାନାବିଧ

ପୂଜା ଅର୍ପଣ କରିବାକୁ ଲାଗିଲେ । ଏହି ବନ ମଧ୍ୟରୁ ଆଗତ ଅସଂଖ୍ୟ ଗାଭୀ ସ୍ୱେଚ୍ଛାରେ ସେହି ଲିଙ୍ଗୋପରି ଦୁଗ୍ଧଧାରା ପ୍ରଦାନ କରି ଚାଲିଗଲେ । ପାର୍ବତୀ ଏହି ଦୃଶ୍ୟ ଦେଖି ବିସ୍ମିତ ଓ ଆନନ୍ଦିତ ହେଲେ । ଦେବୀ ସେହି ଗାଭୀବୃନ୍ଦଙ୍କ ପଶ୍ଚାତ୍ ଗମନ କରିବାକୁ ଲାଗିଲେ ଏବଂ ସେମାନଙ୍କ କ୍ଷୀରଦ୍ୱାରା ତ୍ରିଭୁବନେଶ୍ୱରଙ୍କୁ ଆରାଧନା କଲେ । ଏହାପରେ କିଛିକାଳ ଅତିବାହିତ ହୁଅନ୍ତେ ଦିନେ ଦେବୀଙ୍କ ସମ୍ମୁଖରେ କୀର୍ତ୍ତି ଓ ବାସ ନାମରେ ରାକ୍ଷସଦ୍ୱୟ ଉପସ୍ଥିତ ହୋଇ ପାର୍ବତୀଙ୍କର ରୂପ ଯୌବନାଦିର ଭୂୟସୀ ପ୍ରଶଂସା କରି ସେମାନଙ୍କୁ ବିବାହ କରିବା ଲାଗି ପ୍ରାର୍ଥନା କଲେ । ପାର୍ବତୀ ମନେ ମନେ ଭାବିଲେ—"ଧିକ୍, ପରସ୍ତ୍ରୀଲୋଲୁପ, ଏପରି ଅଭିଳାଷ କାହିଁକି ତୁମ୍ଭମାନଙ୍କ ମନରେ ଉଦିତ ହେଲା ! ତୁମ୍ଭମାନଙ୍କୁ ଶୀଘ୍ର ଯମାଳୟକୁ ଗମନ କରିବାକୁ ହେବ ।"

ତଦନନ୍ତର ପାର୍ବତୀ ଧ୍ୟାନମଗ୍ନ ହୋଇ ମହାଦେବଙ୍କୁ ସ୍ମରଣ କଲେ । ମହାଦେବ ଗୋପାଳ ବେଶରେ ଏକାମ୍ର ବନରେ ଉପସ୍ଥିତ ହେବାରୁ ପାର୍ବତୀ କୀର୍ତ୍ତି ଓ ବାସଙ୍କୁ ବଧ କରିବା ଲାଗି ବର ପ୍ରାର୍ଥନା କଲେ । ମହାଦେବ 'ତଥାସ୍ତୁ' କହି ସେମାନଙ୍କର ବଧୋପାୟ କହିଦେଲେ ।

ଏଥି ଉତ୍ତାରୁ କୀର୍ତ୍ତି ଓ ବାସ ଉପସ୍ଥିତ ହୁଅନ୍ତେ ପାର୍ବତୀ କହିଲେ—"ମୁଁ ତୁମ୍ଭମାନଙ୍କୁ ବିବାହ କରିବି ସତ୍ୟ, କିନ୍ତୁ ମୋର ଗୋଟିଏ ପ୍ରତିଜ୍ଞା ଅଛି; ତୁମ୍ଭମାନଙ୍କ ସ୍କନ୍ଧ ଉପରେ ପାଦ ଦେବି ।' ମୋତେ ଯେ ପ୍ରଥମେ ଉତ୍ତୋଳନ କରି ପାରିବ, ମୁଁ ତାହାର ପାଣି ଗ୍ରହଣ କରିବି ।" ଅସୁରଦ୍ୱୟ ଏ ପ୍ରସ୍ତାବରେ ଅତିଶୟ ଆନନ୍ଦିତ ହୋଇ ତାହାଙ୍କ ପଦଦ୍ୱୟ ମସ୍ତକରେ ରଖି ଉତ୍ତୋଳନ କରିବାକୁ ଚେଷ୍ଟା କଲେ, ମାତ୍ର ଅଶକ୍ତ ହୋଇ ଦେବୀଙ୍କ କର୍ତ୍ତୃକ ନିହତ ହେଲେ । ଯେଉଁ ସ୍ଥାନରେ ଅସୁରଦ୍ୱୟ ନିହତ ହୋଇଥିଲେ, ସେଠାରେ ଅଦ୍ୟାପି ଦେବୀପାଦହରା ନାମକ ପୁଷ୍କରିଣୀ ବିଦ୍ୟମାନ ରହିଅଛି ।

ଉତ୍କଳଖଣ୍ଡବର୍ଣ୍ଣିତ ଉପାଖ୍ୟାନ ଅନୁସାରେ ମହାଦେବ ଅତି ପ୍ରାଚୀନ କାଳରେ ହିମାଳୟ ପର୍ବତରେ ଶ୍ୱଶୁରାଳୟରେ ପାର୍ବତୀଙ୍କ ସହି ବାସ

କରୁଥିଲେ । ପାର୍ବତୀଙ୍କ ସଖୀଗଣ ଓ ପୁରସ୍ତ୍ରୀମାନେ ନାନା ପ୍ରକାରେ ଶିବନିନ୍ଦା କରନ୍ତେ ତାହା ପାର୍ବତୀଙ୍କ ପ୍ରତି ଅସହ୍ୟ ହେଲା । ଦିନେ ପାର୍ବତୀ-ଜନନୀ ପାର୍ବତୀଙ୍କୁ କହିଲେ—"ତୋର ସ୍ୱାମୀର କେଉଁ ଗୁଣରେ ତୁ ମୁଗ୍ଧ ହୋଇ ସର୍ବଦା ବସନଭୂଷଣବିଭୂଷିତ ହୋଇ ମୋ ଗୃହରେ ଅବସ୍ଥାନ କରୁଅଛୁ ?" ପାର୍ବତୀ ଏଥିରେ ମର୍ମାହତ ହୋଇ ହିମାଳୟ ପରିତ୍ୟାଗ କରି ଚାଲିଯିବାକୁ ଶିବଙ୍କୁ ଅନୁରୋଧ କଲେ । ହିମାଳୟରୁ ଆସି ଉଭୟେ କିୟତ୍‌କାଳ ବାରାଣସୀରେ ଅବସ୍ଥାନ କଲେ । ଦ୍ୱାପର ଯୁଗରେ କାଶୀରାଜ କାଶୀଧାମର ରାଜା ଥିଲେ । ସେ କଠୋର ତପସ୍ୟାଦ୍ୱାରା ମହାଦେବଙ୍କୁ ସନ୍ତୋଷ କରାଇ ତାଙ୍କଠାରୁ ବର ପାଇଥିଲେ—ତାଙ୍କର ( କାଶୀରାଜଙ୍କର ) ଯେତେବେଳେ କୌଣସି ବିପଦ ଉପସ୍ଥିତ ହେବ, ସେତେବେଳେ ସେ ତାହାଙ୍କୁ ସାହାଯ୍ୟ କରିବେ । ଦିନେ କାଶୀରାଜ ବିଷ୍ଣୁକୋପାନଳରେ ପଡ଼ିବାରୁ ବିଷ୍ଣୁ ତାହାଙ୍କ ପ୍ରତି ସୁଦର୍ଶନ ଚକ୍ର ପ୍ରୟୋଗ କଲେ । ମହାଦେବ ସେତେବେଳେ ପାଶୁପାତ ଅସ୍ତ୍ର ପ୍ରୟୋଗ କରି କାଶୀରାଜଙ୍କୁ ରକ୍ଷା କରିବାକୁ ଚେଷ୍ଟା କରିଥିଲେ । ମହାଦେବଙ୍କ ସହିତ ବିଷ୍ଣୁଙ୍କର ତୁମୁଳ ସଂଗ୍ରାମ ହେଲା । ଅବଶେଷରେ ମହାଦେବ ପରାସ୍ତ ହେଲେ । ବିଷ୍ଣୁ ତାଙ୍କୁ ଅନେକ କଥା ଭର୍ତ୍ସନା କରି କହିଲେ—"ଧୂର୍ଜ୍ଜଟି ! ବର୍ତ୍ତମାନ ସୁଦ୍ଧା କାଶୀଧାମ ରକ୍ଷା କରିବାର ଅଭିପ୍ରାୟ ଥିଲେ, ମୋର ଆଦେଶରେ ପୁରୁଷୋତ୍ତମ କ୍ଷେତ୍ରକୁ ଗମନ କର । ସେଠାରେ ନୀଳଗିରିର ଉତ୍ତର ଦିଗରେ ଏକାମ୍ର ବନ ବିଦ୍ୟମାନ । ସେଠାରେ ପାର୍ବତୀ ଦେବୀ ସହ ସୁଖ ସ୍ୱଚ୍ଛନ୍ଦରେ କାଳାତିପାତ କର ।" ମହାଦେବ ଏଥିରେ ସମ୍ମତ ହୋଇ ଏକାମ୍ର କ୍ଷେତ୍ରକୁ ଆଗମନ କଲେ ।

ଉଲ୍ଲିଖିତ ଉପାଖ୍ୟାନମାନଙ୍କର ପୌରାଣିକ ଆବରଣ ଉନ୍ମୋଚନ କରି ଦେଲେ ଆମ୍ଭେମାନେ ସହଜରେ ଅନୁମାନ କରି ପାରୁଁ ଯେ, ବାରାଣସୀର ପ୍ରାଧାନ୍ୟ ହ୍ରାସ କରି ଭୁବନେଶ୍ୱରର ପ୍ରାଧାନ୍ୟ ବୃଦ୍ଧି ଏ ଉପାଖ୍ୟାନମାନଙ୍କର ଉଦ୍ଦେଶ୍ୟ । କପିଳସଂହିତା ଓ ଉତ୍କଳଖଣ୍ଡରେ ବର୍ଣ୍ଣିତ ବୃତ୍ତାନ୍ତ ବୈଷ୍ଣବ ଧର୍ମର

ପ୍ରାଧାନ୍ୟଜ୍ଞାପକ । ଶିବପୁରାଣବର୍ଣ୍ଣିତ ବିବରଣ ଯଥାର୍ଥ ବୋଲି ଅନୁମାନ କରାଯାଏ । ଏ ସମସ୍ତ ଅନୁମାନ ମାତ୍ର; ଐତିହାସିକ ତଥ୍ୟ ବିଷୟରେ ଏଥିର କୌଣସି ସମ୍ପର୍କ ନାହିଁ ।

ପ୍ରାଚୀନ ଏକାମ୍ରର କ୍ଷେତ୍ରସୀମା ଯଥାସମ୍ଭବ ଆମ୍ଭେମାନେ ଆଲୋଚନା କରିଅଛୁଁ । ବର୍ତ୍ତମାନ ସୀମା ପୂର୍ବ ସୀମାଠାରୁ ପୃଥକ୍ । ବର୍ତ୍ତମାନ ଭୁବନେଶ୍ୱରର ଉତ୍ତରରେ ରାମେଶ୍ୱର, ଦକ୍ଷିଣରେ କପିଳେଶ୍ୱର, ପୂର୍ବରେ ଭାସ୍କରେଶ୍ୱର, ପଶ୍ଚିମରେ କପିଳପ୍ରସାଦ ବା ଡିମକୁଣ୍ଡ । ଭୁବନେଶ୍ୱରର ଐଶାନ୍ୟ କୋଣରେ ସିଦ୍ଧଗଡ଼, ଅଗ୍ନି କୋଣରେ ଶିଶୁପାଳଗଡ଼, ନୈଋତରେ କପିଳପ୍ରସାଦ ଦୁର୍ଗ, ବାୟୁ କୋଣରେ ନୂଆପଲ୍ଲୀ ଦୁର୍ଗ ପୂର୍ବେ ବିଦ୍ୟମାନ ଥିଲା । ସିଦ୍ଧ ଦୁର୍ଗ ବା ସିଦ୍ଧଗଡ଼ର ଭଗ୍ନାବଶେଷ ରାମେଶ୍ୱର ମନ୍ଦିରର ଅନତିଦୂରରେ ଦୃଷ୍ଟ ହୁଏ । ଏହା କେଶରୀବଂଶୀୟ ରାଜନ୍ୟଗଣଙ୍କର କୀର୍ତ୍ତି ବୋଲି ଅନୁମାନ କରାଯାଏ । ଭୁବନେଶ୍ୱର ଗ୍ରାମର ଐଶାନ୍ୟ କୋଣରେ ବୃହଦ୍ଦୁର୍ଗ ବା ବଡ଼ଗଡ଼; ତାହାର ଦକ୍ଷିଣରେ ମେଘେଶ୍ୱର ଗନ୍ଧବତୀ ନଦୀ ତଟରେ ବିଦ୍ୟମାନ । ଭୁବନେଶ୍ୱରର ଅଗ୍ନି କୋଣରେ ଶିଶୁପାଳଗଡ଼ ଗନ୍ଧବତୀ ନଦୀ ତୀରରେ ଅବସ୍ଥିତ । ନୈଋତ କୋଣରେ ସିଦ୍ଧେଶ୍ୱର ମନ୍ଦିର; ଏଠାରେ ପିଣ୍ଡଦାନ କଲେ ନାଭିଗୟାରେ ପିଣ୍ଡ ଦାନର ଫଳ ମିଳେ ବୋଲି ପ୍ରବାଦ ଅଛି । ଭୁବନେଶ୍ୱରର କିଯ୍ଦ୍ଦୂରରେ ସାମନ୍ତରାୟପୁର ଗ୍ରାମ; କୋଣାର୍କ ମନ୍ଦିରର ତତ୍ତ୍ୱାବଧାରକ ଶିବେଇ ସାମନ୍ତରାୟଙ୍କ କର୍ତ୍ତୃକ ଏ ଗ୍ରାମ ପ୍ରତିଷ୍ଠିତ ବୋଲି ଜନଶ୍ରୁତି ଅଛି ।

# ଚତୁର୍ଥ ଅଧ୍ୟାୟ ।

## ଉତ୍କଳରେ ଶୈବଧର୍ମ ।

### ଭାରତରେ ଶୈବଧର୍ମର ଆବିର୍ଭାବ ।

ଭାରତବର୍ଷରେ ଅତି ପ୍ରାଚୀନ କାଳରୁ ଶୈବଧର୍ମ ପ୍ରଚଳିତ ହୋଇଅଛି ବୋଲି ଆମ୍ଭେମାନେ ବିଶ୍ୱାସ କରୁଁ । ଶ୍ରୀଯୁକ୍ତ ଗିରୀନ୍ଦ୍ର ବନ୍ଦ୍ୟୋପାଧ୍ୟାୟ ମହାଶୟ ବଙ୍ଗଦେଶର ଜଣେ ସୁବିଜ୍ଞ ଲେଖକ । ସେ ମହାଶୟ "ଶିବଠାକୁରେର ଠିକୁଜୀ" ନାମକ ଗୋଟିଏ ପ୍ରବନ୍ଧରେ ଶିବାରାଧନାର ଇତିହାସ ସବିଶେଷ ଆଲୋଚନା କରିଅଛନ୍ତି । * ସେ ହାବାଟ୍ଷ୍ଟେଙ୍ଗ ସାହେବଙ୍କର ମତାନୁଗାମୀ । ତାଙ୍କ ମତରେ ହିଟ୍ଟିଓ ଦେଶର ପ୍ରାଚୀନ ଅଧିବାସୀ ହେଟ୍ଟାଇଟ୍‌ମାନଙ୍କର ବୃଷାରୋହୀ ଦେବ ଓ ସିଂହବାହିନୀ ଦେବୀ ଆମ୍ଭମାନଙ୍କର ଶିବ ଦୁର୍ଗା କଳ୍ପନାର ଭିତ୍ତି । ସେ ଅନୁମାନ କରନ୍ତି, ସପ୍ତମ ଶତାବ୍ଦୀ ପରେ ଶିବଲିଙ୍ଗ ପୂଜା ପ୍ରଚଳିତ ହୋଇଅଛି । ତହିଁ ପୂର୍ବରୁ ଶିବଙ୍କର ସାକାର ଉପାସନା ପ୍ରଚଳିତ ଥିଲା । କିନ୍ତୁ ଆମ୍ଭେମାନେ ଏ ମତକୁ ଅଭ୍ରାନ୍ତ ବୋଲି ମନେ କରି ନ ପାରୁଁ । ମହାଭାରତ ଓ ରାମାୟଣ ଯୁଗରେ ଶିବଲିଙ୍ଗ ପୂଜା ପ୍ରଚଳିତ ଥିବାର ପ୍ରମାଣ ମିଳେ । ଭାରତୀୟ ଐତିହାସିକ ଯୁଗର ପ୍ରାଚୀନ ମୁଦ୍ରାଦିରୁ ଆମ୍ଭେମାନେ

---

* ପ୍ରବାସୀ ପତ୍ରିକା—ଅଶ୍ୱିନ ଓ କାର୍ତ୍ତିକ ସଂଖ୍ୟା ୧୩୨୭ ସାଲ ।

ପ୍ରମାଣ ପାଇଁ ଯେ, କୁଷାଣରାଜ କନିଷ୍କ ଓ ହୁବିଷ୍କଙ୍କ ରାଜତ୍ୱକାଳରେ ମୁଦ୍ରାରେ ଅନ୍ୟାନ୍ୟ ଦେବତା ସହ ମହେଶ୍ୱର ମୂର୍ତ୍ତି ଅଙ୍କିତ ହେଉଥିଲା ।* ଖ୍ରୀଷ୍ଟ ପୂର୍ବ ଯୁଗରୁ ଶିବମୂର୍ତ୍ତି ଓ ଶିବପୂଜାର ପ୍ରଚଳନ ଏଥିରୁ ସ୍ପଷ୍ଟ ଜଣା ପଡ଼େ । ଲିଙ୍ଗପୂଜା ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ଉତ୍ତାରୁ ପ୍ରଚଳିତ ହୋଇଥିବାର କଳ୍ପନା କଲେ ଶିବଲିଙ୍ଗ ପୂଜାପ୍ରସଙ୍ଗ ମହାଭାରତାଦିରେ ଉଲ୍ଲେଖ ନ ଆନ୍ତା । ମହାଭାରତରେ ଅନୁଶାସନ ପର୍ବର ଚତୁର୍ଦ୍ଦଶ ଅଧ୍ୟାୟରେ ଲିଙ୍ଗ ଉପାସନା ବିଷୟ ଉଲ୍ଲେଖ ଅଛି ।

ଭାରତବର୍ଷୀୟ ଉପାସକସମ୍ପ୍ରଦାୟପ୍ରଣେତା ସ୍ୱର୍ଗୀୟ ଅକ୍ଷୟକୁମାର ଦତ୍ତ ମହାଶୟଙ୍କ ମତରେ ଶିବାରାଧନା ବିଷ୍ଣୁ ଆରାଧନା ଅପେକ୍ଷା କୌଣସି ଭାବରେ ଅପ୍ରାଚୀନ ନୁହେଁ । ପୌରାଣିକ ଧର୍ମର ସୂତ୍ରପାତ ସଙ୍ଗେ ସଙ୍ଗେ ଶିବାରାଧନାର ଆରମ୍ଭ । ବେଦ ବା ବୈଦିକ ଧର୍ମ ମାତ୍ର ପ୍ରତିପାଦକ ଶାସ୍ତ୍ର ବ୍ୟତିରେକେ ରାମାୟଣ ଓ ମହାଭାରତ ଓ ଅପରାପର ସମସ୍ତ ଶାସ୍ତ୍ରରେ ଶିବ ପ୍ରସଙ୍ଗ ଓ ଶକ୍ତି ଓ ଶିବ ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି † । ମୃଚ୍ଛକଟିକ ଓ ଅଭିଜ୍ଞାନଶକୁନ୍ତଳା ରଚନା ପୂର୍ବରୁ ଶୈବଧର୍ମ ପ୍ରଚଳିତ ଥିବାର ପ୍ରମାଣ ମିଳେ । ବିକ୍ରମାଦିତ୍ୟ ସମ୍ବତ୍ସର ଖ୍ରୀଷ୍ଟ ପୂର୍ବ ୫୭ ଅବ୍ଦ ପୂର୍ବେ ପ୍ରଚଳିତ ଥିବାର ପ୍ରମାଣିତ ହୋଇଅଛି; ବିକ୍ରମାଦିତ୍ୟ ପ୍ରସଙ୍ଗାଦିରେ ଶିବ ଓ ଶକ୍ତିର ପ୍ରଶଂସା ଦେଖାଯାଏ । ଆଲେକଜାଣ୍ଡର ଖ୍ରୀଷ୍ଟ ପୂର୍ବ ଚତୁର୍ଥ ଶତାବ୍ଦୀରେ ଭାରତାଗମନ କରିଥିଲେ । ମେଗାସ୍ଥିନିସ୍ ଚନ୍ଦ୍ରଗୁପ୍ତଙ୍କ ସଭାରେ ଉପସ୍ଥିତ ଥିଲେ । ସେ ସମୟରେ ହିନ୍ଦୁମାନେ ବେକସ୍ ଓ ହରକିଉଲିୟସ୍ ନାମକ ଦେବତାଦ୍ୱୟଙ୍କର ଆରାଧନା କରୁଥିବାର ମେଗାସ୍ଥିନିସଙ୍କ ଭାରତବିବରଣରୁ

---

* ଶ୍ରୀଯୁକ୍ତ ରଖାଲଦାସ ବନ୍ଦ୍ୟୋପାଧ୍ୟାୟ ପ୍ରଣୀତ—ପ୍ରାଚୀନମୁଦ୍ରା ।

† ଭାରତବର୍ଷୀୟ ଉପାସକ ସମ୍ପ୍ରଦାୟ—୨ୟ ଖଣ୍ଡ ।

ଜଣାଯାଏ । ଗ୍ରୀକମାନେ ମହାଦେବଙ୍କୁ ବେକସ୍ ବୋଲି ଅନୁମାନ କରିଥିବାର ଜଣାପଡ଼େ; କାରଣ ଗ୍ରୀସ ଦେଶର ବେକସ୍ ଦେବତାଙ୍କ ସହିତ ଭାରତ-ବର୍ଷୀୟ ଲିଙ୍ଗପୂଜାର ସାମଞ୍ଜସ୍ୟ ଅଛି ।

ଶୈବଧର୍ମ ଭାରତର ସୀମା ଅତିକ୍ରମ କରି ବହୁଦୂର ପର୍ଯ୍ୟନ୍ତ ବ୍ୟାପ୍ତ ହୋଇଥିଲା । ବେଲୁଚିସ୍ଥାନ ଅନ୍ତର୍ଗତ ହିଙ୍ଗଳାଜ ଶୈବ ଓ ଶାକ୍ତ ଧର୍ମର ପ୍ରଧାନ ସ୍ଥାନ ବୋଲି ଅଦ୍ୟାପି ପରିଚିତ । ଯାବା ଦ୍ୱୀପରେ ଅଦ୍ୟାପି ମୁସଲମାନ ଧର୍ମ ପ୍ରଚଳିତ ଥିଲେ ମଧ୍ୟ ପୂର୍ବେ ସେଠାରେ ହିନ୍ଦୁ ଧର୍ମ ପ୍ରଚଳିତ ଥିବାର ଯଥେଷ୍ଟ ପ୍ରମାଣ ମିଳେ । ସେଠାରେ ଶିବ, ଦୁର୍ଗା, ଗଣେଶ ପ୍ରଭୃତିଙ୍କର ପାଷାଣ ମୂର୍ତ୍ତି ଅଦ୍ୟାପି ବିଦ୍ୟମାନ ଅଛି ।

## ଉତ୍କଳରେ ଶୈବ ଧର୍ମ ।

ଉତ୍କଳରେ କେଉଁ ସମୟରୁ ଶୈବ ଧର୍ମ ପ୍ରଚଳିତ ହେଲା ବା ଶୈବ ପୂଜା ଆରବ୍ଧ ହେଲା, ତାହାର ସମୟ ନିରୂପଣ କରିବା ଅସମ୍ଭବ । ହଣ୍ଟର ସାହେବଙ୍କ ମତରେ * ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଉତ୍କଳରେ ଶୈବ ଧର୍ମ ବିସ୍ତାର ଲାଭ କରିଥିଲା; ସେ ଭୁବନେଶ୍ୱର ମନ୍ଦିରର ନିର୍ମାଣ କାଳଠାରୁ ଉତ୍କଳରେ ଶୈବ ଧର୍ମ ପ୍ରଚଳନର ସମୟ ଗଣନା କରିଅଛନ୍ତି । ସେ କହନ୍ତି, ବୌଦ୍ଧ ଧର୍ମର ପ୍ରାଧାନ୍ୟ ହ୍ରାସ କରି ଶୈବ ଧର୍ମ ଉତ୍କଳରେ ପ୍ରତିଷ୍ଠା ଲାଭ କରି-ଅଛି; କିନ୍ତୁ ହଣ୍ଟର ସାହେବଙ୍କର ଏ ମତ ସମ୍ପୂର୍ଣ୍ଣ ଭ୍ରାନ୍ତ; ଆମ୍ଭେମାନେ ଏହା ଅନୁମୋଦନ କରି ନ ପାରୁଁ । ଆମ୍ଭେମାନେ ପୂର୍ବରୁ କହିଅଛୁଁ, ଭାରତ-ବର୍ଷରେ ମହାଭାରତ ରାମାୟଣ ଯୁଗରୁ ଶିବପୂଜା ପ୍ରଚଳିତ ଥିଲା; ଭାରତର ଅନ୍ତର୍ଗତ ଉତ୍କଳ ପ୍ରଦେଶ ପ୍ରତି ମଧ୍ୟ ଆମ୍ଭମାନଙ୍କର ଉଲ୍ଲିଖିତ ଯୁକ୍ତିମାନ ପ୍ରଯୁଜ୍ୟ ।

---

* Hunter's Orissa vol I p 234

ଧର୍ମ ହିସାବରେ ହଣ୍ଟର ସାହେବ ଉତ୍କଳକୁ ଚାରିଗୋଟି ପ୍ରଧାନ ବିଭାଗରେ ବିଭକ୍ତ କରିଅଛନ୍ତି; ଯଥା—ଯାଜପୁର ବା ବୈତରଣୀ ବିଭାଗ ବା ବିରଜା କ୍ଷେତ୍ର; ଦକ୍ଷିଣ ପୂର୍ବରେ ଅର୍କ କ୍ଷେତ୍ର ବା କୋଣାର୍କ; ଦକ୍ଷିଣ ପଶ୍ଚିମରେ ଶିବକ୍ଷେତ୍ର ବା ଭୁବନେଶ୍ୱର ଆଦି; ଦକ୍ଷିଣରେ ବିଷ୍ଣୁକ୍ଷେତ୍ର ବା ପୁରୀ ଆଦି; କିନ୍ତୁ ଏ ବିଭାଗ ପ୍ରାଚୀନ ଉତ୍କଳର ନୁହେଁ; ବା ହଣ୍ଟର ସାହେବ ଯେପରି ବିଭାଗ କରିଅଛନ୍ତି, ସେହି ବିଭାଗସ୍ଥ ଦେବତା ଭିନ୍ନ ଅନ୍ୟ ଦେବତାଙ୍କୁ ସେ ବିଭାଗର ଲୋକେ ପୂଜା ନ କରନ୍ତି, ଏପରି ନୁହେଁ । ଯାଜପୁରର ଲୋକମାନେ ଜଗନ୍ନାଥଙ୍କୁ ବିଷ୍ଣୁଙ୍କ ଅବତାର ବୋଲି ଆରାଧନା କରନ୍ତି, ପୁରୀ ଲୋକମାନେ ବିରଜା ଦେବୀଙ୍କୁ ମଧ୍ୟ ଭକ୍ତିସହକାରେ ପୂଜା କରନ୍ତି । ହିନ୍ଦୁ ଧର୍ମର ଭାବ ଅନ୍ୟ ଧର୍ମଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଖ୍ରୀଷ୍ଟଧର୍ମାବଲମ୍ବୀ ଏକ ମାତ୍ର ଭଗବାନ୍ ଓ ଯିଶୁଙ୍କ ଛଡ଼ା ଆଉ କାହାରିକୁ ଜାଣନ୍ତି ନାହିଁ, ମାତ୍ର ହିନ୍ଦୁ ଧର୍ମାବଲମ୍ବୀ ସର୍ବଦେବାଧିଦେବ ଭଗବାନଙ୍କୁ ସର୍ବଶକ୍ତିମାନ୍ ଆରାଧ୍ୟ ଦେବତା ବୋଲି ଗଣନା କରି ସୁଦ୍ଧା ତେତିଶ କୋଟି ଦେବତାଙ୍କୁ ସେହି ସର୍ବଶକ୍ତିମାନଙ୍କର ଅଂଶ ବା ଶକ୍ତିର ବିକାଶ ବୋଲି କଳ୍ପନା କରି ପୂଜା କରେ; ତେଣୁ ହିନ୍ଦୁ ଗଛ, ପଥର, ପିତ୍ତଳରେ ସୁଦ୍ଧା ସେହି ଶକ୍ତିମୟଙ୍କ ଶକ୍ତିର ବିକାଶ କଳ୍ପନା କରେ । ଏ ହିସାବରେ ବିଚାର କଲେ ହିନ୍ଦୁ ଧର୍ମର ପ୍ରାରମ୍ଭରୁ ପ୍ରତ୍ୟେକ ହିନ୍ଦୁ-ପ୍ରଧାନ ରାଜ୍ୟରେ ଶିବ, ବିଷ୍ଣୁ, ଦୁର୍ଗା ଆଦିଙ୍କର ପୂଜା ପ୍ରଚଳିତ ଥିଲା ବୋଲି ମନେ କରାଯିବ ।

# ପଞ୍ଚମ ଅଧ୍ୟାୟ ।

## ଭୁବନେଶ୍ୱର ।

### ତ୍ରିଭୁବନେଶ୍ୱର ।

ପ୍ରତ୍ନତତ୍ତ୍ୱବିତ୍ ଡ଼ାକ୍ତର ରାଜେନ୍ଦ୍ରଲାଲ ମିତ୍ର ମହାଶୟ ଭୁବନେଶ୍ୱରର ପ୍ରକୃତ ନାମ 'ତ୍ରିଭୁବନେଶ୍ୱର' ବୋଲି ଉଲ୍ଲେଖ କରିଅଛନ୍ତି । ତାଙ୍କ ମତରେ କେବଳ ଉଚ୍ଚାରଣସୌକର୍ଯ୍ୟାର୍ଥ 'ଭୁବନେଶ୍ୱର' ନାମ ରଖାଯାଇ-ଅଛି; ସେ ମଧ୍ୟ ଲେଖିଅଛନ୍ତି—ହାତୀ ଗୁମ୍ଫାରେ ଉତ୍କୀର୍ଣ୍ଣ ଶିଳାଲିପିରେ ଯେଉଁ କଳିଙ୍ଗ ନଗରୀର ଉଲ୍ଲେଖ ହୋଇଅଛି, ତାହାହିଁ ଭୁବନେଶ୍ୱର । ହୁଏନ୍‌ସାଂ ଖ୍ରୀଷ୍ଟାବ୍ଦ ୬୩୪ ଠାରୁ ୬୪୦ ଅବ୍ଦ ମଧ୍ୟରେ ଉତ୍କଳକୁ ଆଗମନ କରିଥିଲେ । ସେ ସମୟରେ ରାଜା ଲଲାଟେନ୍ଦୁକେଶରୀ ଓଡ଼ିଶାର ରାଜା ଥିଲେ ଓ ଭୁବନେଶ୍ୱର ତତ୍କାଳୀନ ଉତ୍କଳର ରାଜଧାନୀ ଥିଲା । ହୁଏନ୍‌ସାଂଙ୍କ ବର୍ଣ୍ଣିତ ବିବରଣ ଅନୁସାରେ ଏହି ରାଜଧାନୀର ପରିଧି ( ୨୦ ) ବିଂଶତ 'ଲି' ଥିଲା; ଏକ'ଲି'ର ପରିମାଣ ବର୍ତ୍ତମାନ ପ୍ରଚଳିତ ଏକ ମାଇଲର ତିନି ଭାଗର ଏକ ଭାଗ; ଏହି ହିସାବ ଅନୁସାରେ ୨୦ 'ଲି' ପ୍ରାୟ ସାତ ମାଇଲ ହେବ । କିନ୍ତୁ ହୁଏନ୍‌ସାଂଙ୍କ ଜୀବନଚରିତପ୍ରଣେତା ସେଣ୍ଟ ଜୁଲିୟାନ୍ କହନ୍ତି, "ଓଡ଼ିଶାର ରାଜଧାନୀ ତାମ୍ରଲିପ୍ତିର ଦକ୍ଷିଣ ପଶ୍ଚିମରେ ତାମ୍ରଲିପ୍ତିଠାରୁ ୭୦୦ 'ଲି' ବା ୨୩୩ ମାଇଲ ଦୂରରେ ଅବସ୍ଥିତ ଥିଲା; ଏ ହିସାବ ଅନୁସାରେ ଯାଜପୁର-ଠାରେ ରାଜଧାନୀ ଥିଲା ବୋଲି ଅନୁମାନ କରାଯାଏ । ସେ ଯାହାହେଉ,

କେଶରୀବଂଶୀୟ ନରପତିମାନେ ଭୁବନେଶ୍ୱର ନଗରୀର ସ୍ଥାପୟିତା; ସୁତରାଂ ସେଠାରେ ସେମାନଙ୍କର ଅବସ୍ଥାନାଦି ଆଲୋଚନା କରି କ୍ରୁଏନ୍‌ସାଂ ଭୁବନେଶ୍ୱରକୁ ତଦାନୀନ୍ତନ ଉତ୍କଳର ରାଜଧାନୀ ବୋଲି କଳ୍ପନା କରିଥିବେ ।

## ଭୁବନେଶ୍ୱରର ନିର୍ମାଣକାଳ ଓ କେଶରୀବଂଶୀୟ ରାଜଗଣ ।

ଭୁବନେଶ୍ୱର ନଗରୀ ସ୍ଥାପନ ବା ଭୁବନେଶ୍ୱର ମନ୍ଦିରାଦି ନିର୍ମାଣ ପ୍ରସଙ୍ଗ ଆଲୋଚନା କରିବାକୁ ହେଲେ କେଶରୀବଂଶୀୟ ରାଜଗଣଙ୍କ ସମ୍ବନ୍ଧରେ କିଞ୍ଚିତ୍ ଆଲୋଚନାର ପ୍ରୟୋଜନ । ମାଦଳାପାଞ୍ଜିର ବିବରଣ ଅନୁସାରେ କେଶରୀବଂଶୀୟ ରାଜଗଣ ଖ୍ରୀଷ୍ଟୀୟ ୪୭୪ ଅବ୍ଦରୁ ଖ୍ରୀଷ୍ଟୀୟ ୧୧୩୨ ଅବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ହଣ୍ଟର ସାହେବ ସ୍ୱର୍ଗୀୟ ଭବାନୀଚରଣ ବନ୍ଦ୍ୟୋପାଧ୍ୟାୟପ୍ରଣୀତ ମାଦଳାପାଞ୍ଜିର ବଙ୍ଗାନୁବାଦ— 'ପୁରୁଷୋତ୍ତମଚନ୍ଦ୍ରିକା'ରୁ ଯେଉଁ ତାଲିକା ସଂଗ୍ରହ କରିଅଛନ୍ତି, ସେଥିରୁ ସ୍ପଷ୍ଟ ଜଣାଯାଏ ଯେ, ୪୪ ଜଣ କେଶରୀବଂଶୀୟ ରାଜା ଉତ୍କଳରେ ରାଜତ୍ୱ କରିଥିଲେ । ଉତ୍କଳୀୟ ରାଜବଂଶୀୟ ରୀତି ଅନୁସାରେ ଏକ ବଂଶରେ ଏକ ନାମଧେୟ ଏକାଧିକ ରାଜା ରାଜତ୍ୱ କରିଥିବାର ଜଣାଯାଏ । ଯଯାତିକେଶରୀ କେଶରୀବଂଶୀୟ ପ୍ରଥମ ରାଜା, ସେ ଜନ୍ମେଜୟ କେଶରୀଙ୍କ ପୁତ୍ର ବୋଲି ତାମ୍ରଶାସନରୁ ଜଣା ପଡ଼େ । ଏହି କେଶରୀ ବଂଶରେ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ଜନ୍ମେଜୟ କେଶରୀ ନାମକ ଜଣେ ରାଜା ରାଜତ୍ୱ କରିଥିଲେ; କୌଣସି କୌଣସି ପଣ୍ଡିତ ଯଯାତିଙ୍କ ପିତା ଜନ୍ମେଜୟ ଥିବା ହେତୁବାଦରେ ହେଉ ବା ଅନ୍ୟ କାରଣରୁ ହେଉ ଯଯାତିଙ୍କୁ ନବମ ଶତାବ୍ଦୀର ଲୋକ ବୋଲି ଅନୁମାନ କରନ୍ତି; କିନ୍ତୁ ସେ ଅନୁମାନ ଅନ୍ୟାନ୍ୟ ଘଟଣା ଦୃଷ୍ଟିରେ ଭ୍ରାନ୍ତି-ମୂଳକ ବୋଲି ଜଣାଯାଏ । ଡାକ୍ତର ଫ୍ଲିଟ ( Fleet ), ଶ୍ରୀଯୁକ୍ତ ମନୋମୋହନ ଗଙ୍ଗୋପାଧ୍ୟାୟ ଓ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାର ପ୍ରଭୃତି ଏହି ମତର ପକ୍ଷପାତୀ ।

ଭୁବନେଶ୍ୱର ।

ବୌଦ୍ଧଧର୍ମ ଯଯାତିଙ୍କର ଉତ୍କଳାଗମନ ପୂର୍ବରୁ ଉତ୍କଳରେ ପ୍ରାଧାନ୍ୟ ଲାଭ କରିଥିଲା । ଯଯାତି ବୌଦ୍ଧଧର୍ମର ପ୍ରାଧାନ୍ୟ ହ୍ରାସ ଓ ହିନ୍ଦୁ ଧର୍ମର ପ୍ରାଧାନ୍ୟ ସ୍ଥାପନରେ ବ୍ରତୀ ହୋଇଥିଲେ । ଯଯାତିଙ୍କ ଆଗମନର ୧୪୭ ବା ପ୍ରାୟ ଦେଢ଼ଶତ ବର୍ଷ ପୂର୍ବେ ଯବନମାନେ ଅର୍ଥାତ୍ ବୌଦ୍ଧମାନେ ଓଡ଼ିଶାରେ ପ୍ରତିଷ୍ଠା ଲଭ କରିଥିଲେ । ଯଯାତିଙ୍କୁ ନବମ ଶତାବ୍ଦୀକୁ ଟାଣି ଆଣିଲେ ଅଷ୍ଟମ ବା ସପ୍ତମ ଶତାବ୍ଦୀରେ ଓଡ଼ିଶାରେ ବୌଦ୍ଧଧର୍ମ ପ୍ରଚଳିତ ଥିଲା ବୋଲି କଳ୍ପନା କରାଯାଇ ପାରେ; କିନ୍ତୁ ଆମ୍ଭେମାନେ ସେପରି କଳ୍ପନା କରିବାକୁ ଅକ୍ଷମ ।

କଟକ କଲେକ୍ଟରୀରୁ ପ୍ରାପ୍ତ ତାମ୍ରଶାସନରୁ ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ମହାଶୟ ଲେଖିଅଛନ୍ତି—'ଯଯାତି ଆପଣାକୁ ମହାରାଜା ଓ ମଗଧରାଜ ସିଂହାସନାଧିରୂଢ଼ ଭବ ଗୁପ୍ତଙ୍କୁ ମହାରାଜାଧିରାଜ ବୋଲି ଉଲ୍ଲେଖ କରିଅଛନ୍ତି ।' ଯଯାତି ବ୍ରାହ୍ମଣ୍ୟ ଧର୍ମ ସ୍ଥାପନୋଦ୍ଦେଶ୍ୟରେ ଉତ୍କଳକୁ ଆଗମନ କରି ପ୍ରଥମତଃ ଯାଜପୁରଠାରେ ଅବସ୍ଥାନ କରିଥିଲେ; ସେଠାରେ ସେ ଦଶ ସହସ୍ର ବ୍ରାହ୍ମଣଙ୍କୁ ଭୂମିଦାନାଦି ଦେଇ ଶାସନ ସ୍ଥାପନ କରିଥିଲେ ବୋଲି କିମ୍ବଦନ୍ତୀ ଅଛି ।

ଜେନରାଲ କନିଂହାମ ସାହେବ ପ୍ରାଚୀନ ଭାରତର ଭୌଗୋଳିକ ବିବରଣ ( Ancient Geography of India ) ପୁସ୍ତକରେ ଲେଖିଅଛନ୍ତି, ଯଯାତିକେଶରୀ କଟକ ନଗରୀରୁ ଓଡ଼ିଶାର ରାଜଧାନୀ ଉଠାଇ ନେଇ ଯାଜପୁରଠାରେ ସ୍ଥାପନ କରିଥିଲେ, କିନ୍ତୁ ମାଦଳାପାଞ୍ଜିର ବିବରଣରୁ ଜଣାଯାଏ, କଟକ ନଗରୀ ନୃପତିକେଶରୀଙ୍କ କର୍ତ୍ତୃକ ସ୍ଥାପିତ ହୋଇଥିଲା । ହଣ୍ଟର ସାହେବଙ୍କ ମତରେ ଭୁବନେଶ୍ୱର ଉତ୍କଳର ଶୈବ ରାଜାମାନଙ୍କର ରାଜଧାନୀ ଥିଲା; କିନ୍ତୁ ଯାଜପୁରଠାରେ ବ୍ରାହ୍ମଣଶାସନ ସ୍ଥାପିତ ହୋଇଥିଲା । ଶୈବ ରାଜାମାନେ ଯାଜପୁରଠାରେ ବ୍ରାହ୍ମଣ ଶାସନ ସ୍ଥାପନ

କରି ସେମାନଙ୍କୁ ନିଷ୍କର ଭୂମି ପ୍ରଦାନ କରିଥିଲେ । ଦୁଇ ଶତ ବର୍ଷବ୍ୟାପୀ ଶାସନସ୍ଥାପନ ଓ ଭୂମିଦାନଦ୍ୱାରା ଯାଜପୁର ବୃହତ୍ ନଗରୀରେ ପରିଣତ ହୋଇଥିଲା; ଚୀନ ପରିବ୍ରାଜକ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଯାଜପୁରର ସମୃଦ୍ଧି ଦର୍ଶନ କରିଥିଲେ; ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ହିନ୍ଦୁ ଓ ମୁସଲମାନ ନୃପତିଗଣ ଏହିଠାରେ ଉତ୍କଳାଧିକାର ଲାଗି ଘୋର ସଂଗ୍ରାମରେ ପ୍ରବୃତ୍ତ ହୋଇଥିଲେ । ଯାଜପୁରର ଦେବତା, ତାହାର ପୁଣ୍ୟ ପ୍ରଭାବ ଓ ଧ୍ୱଂସାବଶେଷ ତାହାର ପ୍ରାଚୀନ ସମୃଦ୍ଧିର ପରିଚାୟକ ।

କେଶରୀ ବଂଶର ପ୍ରାଧାନ୍ୟ ବିସ୍ତାର କାଳରୁ ଅର୍ଥାତ୍ ଖ୍ରୀଷ୍ଟୀୟ ୪୭୪ ଅବ୍ଦରୁ ଉତ୍କଳରେ ବୌଦ୍ଧଧର୍ମ ଓ ଶୈବଧର୍ମ ମଧ୍ୟରେ ପରସ୍ପର ପ୍ରାଧାନ୍ୟ ବିସ୍ତାର ଲାଗି ଘୋର ପ୍ରତିଦ୍ୱନ୍ଦ୍ୱିତା ଲାଗି ରହିଥିଲା । କ୍ରମେ ବୌଦ୍ଧଧର୍ମର ପ୍ରାଧାନ୍ୟ ଲୁପ୍ତ ହେଲା, ବୌଦ୍ଧ ଯତିମାନେ ଖଣ୍ଡଗିରି ଓ ଉଦୟଗିରି ଗହ୍ୱରରୁ ଦେଖିଲେ, ଅନତିଦୂରରେ ସହସ୍ର ସହସ୍ର ଶିବମନ୍ଦିର ତାହାର ଉନ୍ନତ ଚୂଡ଼ା ଟେକି ବୌଦ୍ଧଧର୍ମର ପ୍ରାଧାନ୍ୟ ଖର୍ବ କରୁଅଛି ।

କେଶରୀବଂଶୀୟ ରାଜନ୍ୟଗଣ ପ୍ରଧାନତଃ ଶୈବଧର୍ମାବଲମ୍ବୀ ଥିଲେ; ଭୁବନେଶ୍ୱରର ବିଭିନ୍ନ ମନ୍ଦିର ଓ ସରୋବରାଦି କେଶରୀ ବଂଶର ସର୍ବ ପ୍ରଧାନ କୀର୍ତ୍ତି । ଭୁବନେଶ୍ୱରର ମନ୍ଦିରାଦି ଖ୍ରୀଷ୍ଟୀୟ ୫୦୦ ଅବ୍ଦରେ କେଶରୀବଂଶୀୟ ପ୍ରଥମ ନରପତିଙ୍କ କର୍ତ୍ତୃକ ଆରବ୍ଧ ହୋଇ ଖ୍ରୀଷ୍ଟୀୟ ୬୫୭ ଅବ୍ଦରେ, କାହାରି କାହାରି ମତରେ ଲଲାଟେନ୍ଦୁ କେଶରୀଙ୍କ ରାଜତ୍ୱକାଳରେ ଏବଂ କାହାରି କାହାରି ମତରେ ଲଲାଟେନ୍ଦ୍ର କେଶରୀଙ୍କ ରାଜତ୍ୱ କାଳରେ ସମାପ୍ତ ହୋଇ-ଥିଲା ।

ମାଦଳାପାଞ୍ଜିକାରଙ୍କ ମତରେ ସୁବର୍ଣ୍ଣ କେଶରୀ ଉତ୍କଳବର୍ତ୍ତି କେଶରୀ ବଂଶର ଶେଷ ନରପତି । ସୁବର୍ଣ୍ଣ କେଶରୀଙ୍କର ସନ୍ତାନାଦି ନ ଥିବାରୁ ଦାକ୍ଷିଣାତ୍ୟରୁ ଚୋଡ଼ଗଙ୍ଗ ଦେବ ଆଗମନ କରି ଉତ୍କଳ ସିଂହାସନାଧିରୂଢ଼

ହୋଇଥିଲେ । କାହାର କାହାର ମତରେ ସୁବର୍ଣ୍ଣ କେଶରିଙ୍କ ସଙ୍ଗରେ ବାସୁଦେବ ବାହିନୀପତି ନାମରେ ଜଣେ ସଭାସଦ୍ ଥିଲେ; ତାଙ୍କ ସହିତ ସୁବର୍ଣ୍ଣ କେଶରୀଙ୍କ ମନୋମାଳିନ୍ୟ ହେବାରୁ ସେ ସୁବର୍ଣ୍ଣ କେଶରୀଙ୍କ କର୍ତ୍ତୃକ ବହିଷ୍କୃତ ହୋଇ ଗଙ୍ଗବଂଶସ୍ଥାପୟିତା ଚୋଡ଼ଗଙ୍ଗଙ୍କୁ ଉତ୍କଳକୁ ଆହ୍ୱାନ କରିଥିଲେ । ତଦବଧି ଗଙ୍ଗବଂଶୀୟ ରାଜଗଣ ଉତ୍କଳର ସ୍ୱାଧୀନତା ଲୁପ୍ତ ହେବା ପର୍ଯ୍ୟନ୍ତ ଉତ୍କଳସିଂହାସନାଧିଷ୍ଠ ହୋଇଥିଲେ ।

ଭୁବନେଶ୍ୱରର ଲିଙ୍ଗରାଜମନ୍ଦିରର ନିର୍ମାଣ କାଳ ସମ୍ବନ୍ଧରେ ଶ୍ରୀଯୁକ୍ତ କେ. ପି. ଜୟସୱାଲ ମହାଶୟ ବିହାର-ଓଡ଼ିଶାର ଐତିହାସିକ ତତ୍ତ୍ୱ-ପ୍ରକାଶିକା ପତ୍ରିକାରେ (Research Society Journal of Bihar and Orissa) ଗୋଟିଏ ପ୍ରବନ୍ଧ ଲେଖିଥିଲେ । ସେଥିରେ ସେ ଲେଖିଥିଲେ, ଲିଙ୍ଗରାଜମନ୍ଦିରର ଶିଖରଦେଶରେ ଗୋଟିଏ ତାମ୍ରଲିପି ବା ପ୍ରସ୍ତରଲିପି-ଯୁକ୍ତ ଫଳକ ଅଛି; ସେ ଲିପି ଖଣ୍ଡି ଭୁବନେଶ୍ୱରର ମନ୍ଦିର ନିର୍ମାଣର ସମୟ-ନିରୂପକ; କିନ୍ତୁ ଜୟସୱାଲ ମହାଶୟ ବୋଧ ହୁଏ ଜାଣନ୍ତି ନାହିଁ ଯେ, ଲିଙ୍ଗରାଜମନ୍ଦିରର ଶିଖରଦେଶ ଦୁର୍ଗମ ସ୍ଥାନ ନୁହେ । ବର୍ଷକ ମଧ୍ୟରେ ପଣ୍ଡାମାନେ ଧ୍ୱଜ ବସାଇବାକୁ ଅନେକ ଥର ଏଥିର ଶିଖରଦେଶକୁ ଗମନ କରିଥାନ୍ତି । ଆମ୍ଭେମାନେ ଭୁବନେଶ୍ୱର ମନ୍ଦିରର ମେନେଜରଙ୍କଠାରୁ ଉତ୍ତମରୂପେ ବୁଝିଅଛୁଁ, ଜୟସୱାଲ ମହାଶୟଙ୍କ ଲିଖିତ ପ୍ରବନ୍ଧ ପ୍ରକାଶିତ ହେଲା ପରେ ମଧ୍ୟ ଲୋକ ପଠାଇ ଅନୁସନ୍ଧାନ କରାଯାଇଥିଲା; ଯଥାର୍ଥରେ ମନ୍ଦିରର ଶିଖରଦେଶରେ କୌଣସି ଲିପି ନାହିଁ, ସୁତରାଂ ଆମ୍ଭମାନଙ୍କୁ ଅନ୍ୟ ଉପାୟରେ ଏ ମନ୍ଦିରର ନିର୍ମାଣର କାଳ ନିରୂପଣ କରିବାକୁ ହେବ ।

ଇଉରୋପୀୟ ପଣ୍ଡିତ ଓ ସ୍ଥପତିଗଣଙ୍କ ମଧ୍ୟରୁ କାହାରି କାହାରି ମତରେ ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର ଦେଶୀୟ ସ୍ଥାପତ୍ୟ ଶିଳ୍ପର ଯୁଗ-ନିର୍ଦ୍ଦେଶକ ( Landmark ) । ଡାକ୍ତର ଲେବି ଏହାକୁ ଶିଳ୍ପଗୌରବ-ସମ୍ପନ୍ନ ଶ୍ରେଷ୍ଠତମ ଭାରତୀୟ ମନ୍ଦିରସମୂହର ଅନ୍ତର୍ଗତ ବୋଲି ନିର୍ଦ୍ଦେଶ

କରିଅଛନ୍ତି । ତାଙ୍କ ମତରେ ଓଡ଼ିଶାର ଅନ୍ୟାନ୍ୟ ମନ୍ଦିରମାନ ଏହାର ଅନୁକରଣରେ ନିର୍ମିତ, କିନ୍ତୁ ବ୍ରହ୍ମେଶ୍ୱର, ରାଜାରାଣୀ, ସିଦ୍ଧେଶ୍ୱର, କେଦାରେଶ୍ୱର, ବୈତାଳଦେଉଳ ପ୍ରଭୃତିର ଆକୃତି ଦେଖିଲେ ଏ ଉକ୍ତି ସେ ଦେଉଳମାନଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ ବୋଲି ସ୍ପଷ୍ଟ ଜଣା ପଡ଼ିବ । ମି. ଷ୍ଟର୍ଲିଂ ପ୍ରଭୃତି ପଣ୍ଡିତମାନେ ଖ୍ରୀଷ୍ଟୀୟ ୬୫୭ ଅବ୍ଦରୁ ଲିଙ୍ଗରାଜ ମନ୍ଦିରର ନିର୍ମାଣକାଳ ନିର୍ଣ୍ଣୟ କରନ୍ତି ।

କୌଣସି କୌଣସି ଇଉରୋପୀୟ ପଣ୍ଡିତ କେଶରୀ ବଂଶର ଅସ୍ତିତ୍ୱ ସୁଦ୍ଧା ସ୍ୱୀକାର କରିବାକୁ ନାରାଜ; ଡାକ୍ତର ଫ୍ଲିଟ୍ ଏହି ଶ୍ରେଣୀର ପଣ୍ଡିତମାନଙ୍କ ମଧ୍ୟରେ ଜଣେ; ସେ କେଶରୀବଂଶୀୟ ନରପତିମାନଙ୍କ ମଧ୍ୟରୁ କୂର୍ମକେଶରୀ, ବରାହକେଶରୀ ପ୍ରଭୃତି ନାମଗୁଡ଼ିକୁ କାଳ୍ପନିକ ବୋଲି ଉଡ଼ାଇ ଦେବାକୁ ପ୍ରସ୍ତୁତ ଏବଂ ଅଲାବୁ କେଶରୀଙ୍କୁ ଆଲେପ ଖା ନାମକ ମୁସଲମାନ ଶାସନ-କର୍ତ୍ତାଙ୍କର ଅବତାର ବୋଲି କଳ୍ପନା କରିଅଛନ୍ତି; କିନ୍ତୁ ଆମ୍ଭେମାନେ ମଧ୍ୟ ଫ୍ଲିଟ୍ ସାହେବଙ୍କର ଏ ମତକୁ ବାତୁଳତା ବୋଲି ଉଡ଼ାଇ ଦେବାକୁ ଅପ୍ରସ୍ତୁତ ନୋହୁଁ । ପକ୍ଷାନ୍ତରେ କନିଂହାମ ସାହେବଙ୍କ ମତରେ ଯଯାତିକେଶରୀ ଖ୍ରୀଷ୍ଟୀୟ ୫୨୭ ଅବ୍ଦରେ ଓଡ଼ିଶାର ରାଜା ଥିଲେ ।

ଶ୍ରୀଯୁକ୍ତ ଆଶୁତୋଷ ମୁଖୋପାଧ୍ୟାୟ ପ୍ରଣୀତ 'ସେତୁବନ୍ଧଯାତ୍ରା' ପୁସ୍ତକରେ ଏକାମ୍ରପୁରାଣରୁ ଗୋଟିଏ ଶ୍ଳୋକ ଉଦ୍ଧୃତ ହୋଇଅଛି; ମାତ୍ର ଶ୍ଳୋକଟି ଗୋବିନ୍ଦ ରଥଙ୍କ କର୍ତ୍ତୃକ ପ୍ରକାଶିତ ଏକାମ୍ରପୁରାଣରେ ନାହିଁ; ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ଆଚାର୍ଯ୍ୟ ଚଉଧୁରୀ ପ୍ରଣୀତ 'ନୀଳାଚଳେ ଶ୍ରୀ ଜଗନ୍ନାଥ ଓ ଶ୍ରୀ ଗୌରାଙ୍ଗ' ଗ୍ରନ୍ଥରେ ମଧ୍ୟ ସେହି ଶ୍ଳୋକଟି ସାମାନ୍ୟ ପରିବର୍ତ୍ତନ ସହିତ ଲିଖିତ ହୋଇଅଛି :—

"ଗଜାଷ୍ଟେଷୁ ମିତେ ଜାତେ ଶକାବ୍ଦେ କୀର୍ତ୍ତିବାସସଃ ।
ପ୍ରାସାଦମକରୋଦ୍ରାଜା ଲଲାଟେନ୍ଦୁସ୍ତୁ କେଶରୀ ।"

ପାଠାନ୍ତର—( ପ୍ରାସାଦଂ କାରୟାମାସ ଲଲାଟେନ୍ଦୁ କେଶରୀ )

ଉଲ୍ଲିଖିତ ଶ୍ଳୋକର ପ୍ରମାଣ ଅନୁଯାୟୀରେ ଲିଙ୍ଗରାଜମନ୍ଦିର ୫୮୮ ଶକାବ୍ଦରେ ନିର୍ମିତ ହୋଇଥିଲା, ବର୍ତ୍ତମାନ ୧୮୪୪ ଶକାବ୍ଦ ଓ ୧୯୨୨ ଖ୍ରୀଷ୍ଟାବ୍ଦ; ସୁତରାଂ ୫୮୮ ଶକାବ୍ଦରେ ୬୬୬ ଖ୍ରୀଷ୍ଟାବ୍ଦ ହୁଏ । ମାଦଳା ପାଞ୍ଜିର ବିବରଣୀ ଅନୁସାରେ ଲଲାଟେନ୍ଦୁ କେଶରୀ ବା ଅଲାବୁ କେଶରୀ ଖ୍ରୀଷ୍ଟାବ୍ଦ ୬୨୩ ଅବ୍ଦରୁ ୬୭୭ ଅବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସୁତରାଂ ତାଙ୍କ ରାଜତ୍ୱ କାଳରେ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ସମ୍ପୂର୍ଣ୍ଣ ହୋଇଥିବା ଆଦୌ ଅସମ୍ଭବ ନୁହେ । ମାଦଳାପାଞ୍ଜି ଓ ପ୍ରଚଳିତ ପ୍ରବାଦାଦି ମତରେ ଯଯାତିକେଶରୀ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରର ନିର୍ମାଣକାର୍ଯ୍ୟ ଆରମ୍ଭ କରିଥିଲେ; ତାଙ୍କ ପରବର୍ତ୍ତୀ ସୂର୍ଯ୍ୟ କେଶରୀ ଓ ଅନନ୍ତ କେଶରୀ ଓ ଲଲାଟେନ୍ଦୁ କେଶରୀଙ୍କ (ଅଲାବୁ କେଶରୀ) ମଧ୍ୟରୁ ସୂର୍ଯ୍ୟକେଶରୀ ଏ କାର୍ଯ୍ୟରେ ଆଦୌ ହସ୍ତକ୍ଷେପ କରି ନାହାନ୍ତି । ଅନନ୍ତକେଶରୀ ପୁନର୍ବାର ଏ କାର୍ଯ୍ୟରେ ପ୍ରବୃତ୍ତ ହୋଇଥିଲେ । କିନ୍ତୁ ତାଙ୍କ ରାଜତ୍ୱ କାଳରେ ସ୍ତମ୍ଭ କାର୍ଯ୍ୟ ଶେଷ ହୋଇ ନାହିଁ । ଲଲାଟେନ୍ଦୁ କେଶରୀ ଏ କାର୍ଯ୍ୟ ସମ୍ପାଦନ କରିଥିଲେ ।

ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମନ୍ଦିରର ବଡ଼ଦାଣ୍ଡ ବଡ଼ିଭିନ୍ନ ସମୟରେ ନିର୍ମିତ ହୋଇଥିଲା ବୋଲି କେହି କେହି କହନ୍ତି ଓ ଭୁବନେଶ୍ୱରସ୍ଥ ଅନ୍ୟାନ୍ୟ ମନ୍ଦିର ମଧ୍ୟ ବିଭିନ୍ନ ସମୟରେ ନିର୍ମିତ ହୋଇଥିଲା । ଏ ପ୍ରସଙ୍ଗ ଆମ୍ଭେମାନେ ପରବର୍ତ୍ତୀ ଅଧ୍ୟାୟରେ ବିଶଦଭାବରେ ଆଲୋଚନା କରିବୁ ।

# ଷଷ୍ଠ ଅଧ୍ୟାୟ ।

## ଭୁବନେଶ୍ବରର ମନ୍ଦିରାଦି ।

ଭୁବନେଶ୍ବରରେ ସଂଖ୍ୟାତୀତ ଶିବମନ୍ଦିର ଅଛି; ତନ୍ମଧ୍ୟରୁ କୌଣସିଟି ଅର୍ଦ୍ଧଭଗ୍ନ, କୌଣସିଟି ପତନୋନ୍ମୁଖ, କୌଣସିଟିର ଅସ୍ତିତ୍ୱ ନଷ୍ଟ ହୋଇ ଗଲାଣି । ବହୁ ଆୟାସ ସତ୍ତ୍ୱେ ଭୁବନେଶ୍ବରର ସମସ୍ତ ମନ୍ଦିରର ସଂଖ୍ୟା ନିରୂପଣ କରିବା ଅସମ୍ଭବ । ପ୍ରବାଦ ଅଛି, ଭୁବନେଶ୍ବର ନଗରସ୍ଥାପୟିତାମାନେ ଭୁବନେଶ୍ବରରେ ଏକକୋଟି ଲିଙ୍ଗ ସ୍ଥାପନ କରିବାରେ ପ୍ରୟାସୀ ଥିଲେ; ସେମାନଙ୍କ ଚେଷ୍ଟା କେତେଦୂର ଫଳବତୀ ହୋଇଥିଲା, ତାହା ଆମ୍ଭେମାନେ ସହଜରେ ସ୍ଥିର କରି ପାରୁ ନାହୁଁ । ଭୁବନେଶ୍ବରରେ ବାଟ ଘାଟ ଜଙ୍ଗଲ ମଧ୍ୟରେ ସବୁଠାରେ ଶିବଲିଙ୍ଗ ଦୃଷ୍ଟ ହୁଏ; କିନ୍ତୁ ସବୁ ଲିଙ୍ଗ ଆଜିକାଲି ପୂଜା ପାଆନ୍ତି ନାହିଁ ବୋଲି ଆମ୍ଭମାନଙ୍କର ବିଶ୍ୱାସ, ବଡ଼ ବଡ଼ ଦେଉଳର ଭିନ୍ନ ଭିନ୍ନ ପଣ୍ଡା ଅଛନ୍ତି; ସେମାନେ ସେହି ସେହି ଦେଉଳର ମହାଦେବଙ୍କ ପୂଜା ଆଦି କରିବା ସକାଶେ ବୃତ୍ତି ଭୋଗ କରନ୍ତି; କିନ୍ତୁ ଆମ୍ଭେମାନେ ଯାହା ଦେଖି-ଅଛୁଁ, ସେଥିରୁ ଆମ୍ଭମାନଙ୍କର ଧାରଣା, ପୂଜା କରିବା ଦୂରର କଥା, ବର୍ଷକ ମଧ୍ୟରେ କେବେ ପଣ୍ଡାଙ୍କର ମହାପ୍ରଭୁଙ୍କ ସହିତ ସାକ୍ଷାତ ହୁଏ କି ନାହିଁ ସନ୍ଦେହ; ପକ୍ଷାନ୍ତରରେ କୌଣସି କୌଣସି ପଣ୍ଡା ଅପ୍ରସିଦ୍ଧ ଦୂରବର୍ତ୍ତୀ ମନ୍ଦିରମାନଙ୍କର ଲିଙ୍ଗକୁ ଅପହରଣ କରି ଗ୍ରାମାନ୍ତରରେ ବିକ୍ରୟ କରିବା ବ୍ୟବସାୟ କରି-ଅଛନ୍ତି; ଏଥିର ଫଳରେ ଅନେକ ମନ୍ଦିର ଲିଙ୍ଗଶୂନ୍ୟ ହୋଇଅଛି । ଲେଖକ ନିଜେ ଜାଣେ, ଆଜିକି ଦଶ ବାର ବର୍ଷ ତଳେ ଭୁବନେଶ୍ବରର ଜଣେ ସେବକ ଗୋଟିଏ ଲିଙ୍ଗ ମୂର୍ତ୍ତିଙ୍କୁ ଅଖାରେ ପୂରାଇ ଲେଖକର ନିଜଠାରେ ବିକ୍ରୟାର୍ଥ ଉପସ୍ଥିତ ହୋଇଥିଲା; ସେ ଲିଙ୍ଗଙ୍କୁ ସ୍ଥାନଚ୍ୟୁତ କରି ଆଣିଥିବାରୁ ଆମ୍ଭେ-

ମାନେ ତାଙ୍କୁ ଭର୍ତ୍ସନା କଲେ । ସେ ଲିଙ୍ଗଟିକୁ ଘେନି ଫେରି ଆସିଲେ ସତ୍ୟ; କିନ୍ତୁ ବାଟରେ ଫୋପାଡ଼ି ଦେଇ ଚାଲି ଆସିଲେ; ଆମ୍ଭେମାନେ ବାଧ୍ୟ ହୋଇ ସେ ଲିଙ୍ଗକୁ ଗୋଟାଇ ନେଇ ଅଦ୍ୟାପି ପୂଜା କରୁଅଛୁ । ଯେଉଁ ବ୍ରାହ୍ମଣ ଓ ସେବକମାନଙ୍କୁ ଦେବକ୍ଷେତ୍ରମାନଙ୍କରେ ଦେବାରାଧନା ଓ ଦେବତାଙ୍କ ସେବା ଲାଗି ଖଞ୍ଜାଯାଇ ଭୂମି ଦାନ କରାଯାଇଥିଲା, ସେହିମାନେ ଦେବକ୍ଷେତ୍ରର କଳଙ୍କ ହୋଇଅଛନ୍ତି, ଦେବାବମାନନାର ପାପରେ ନିଜେ ସଢ଼ୁଅଛନ୍ତି ଓ ଅନ୍ୟମାନଙ୍କୁ ସେ ପାପର ଭାଗୀ କରାଉଅଛନ୍ତି । କୌଣସି ତୀର୍ଥଯାତ୍ରୀ ଦେବଦର୍ଶନ ଲାଗି ପହଞ୍ଚିଲେ ବା ଦେବତାଙ୍କ ସମ୍ବନ୍ଧରେ କୌଣସି ତଥ୍ୟ ଜାଣିବାର ଇଚ୍ଛା ପ୍ରକାଶ କଲେ, ସେମାନଙ୍କଠାରୁ ତାହା ପାଇବା ଦୁଃସାଧ୍ୟ । କେବଳ ଯାତ୍ରୀଠାରୁ ଅର୍ଥ ଶୋଷଣ କରି ଭାଙ୍ଗ ଖାଇବା ସେମାନଙ୍କର ଅଭିଳାଷ । ଭୁବନେଶ୍ୱରର ମନ୍ଦିର ପରିଚାଳନା ଲାଗି ମନ୍ଦିର କମିଟି ଅଛି ସତ୍ୟ, କିନ୍ତୁ ମନ୍ଦିର କମିଟିର କ୍ଷମତା ସେବକମାନଙ୍କ ଉପରେ ପରିଚାଳିତ ହେଉ ନ ଥିବାରୁ ବା ସେପରି କ୍ଷମତା ବିସ୍ତାର କରିବାର ଶକ୍ତି କମିଟିର ନ ଥିବାରୁ ଏବଂ ମନ୍ଦିର କମିଟିର ମେମ୍ବରମାନେ ପରସ୍ପର ମଧ୍ୟରେ କଳହ କରି ସେବକମାନଙ୍କ ପକ୍ଷାବଲମ୍ବନ କରୁଥିବାରୁ ସେବକମାନେ ଯଥେଚ୍ଛାଚାର କରିବାର ସୁବିଧା ପାଉଅଛନ୍ତି ।

ଭୁବନେଶ୍ୱରସ୍ଥ କ୍ଷୁଦ୍ର ବୃହତ୍ ସମସ୍ତ ମନ୍ଦିରର ବିବରଣ ଲିପିବଦ୍ଧ କରିବା ଅସମ୍ଭବ; ଏ ପ୍ରବନ୍ଧରେ ଆମ୍ଭେମାନେ କେବଳ ପ୍ରସିଦ୍ଧ ଉଲ୍ଲେଖଯୋଗ୍ୟ ମନ୍ଦିରମାନଙ୍କର ବିବରଣ ପ୍ରକାଶ କରିବୁଁ ।

## ଲିଙ୍ଗରାଜ ମନ୍ଦିର ବା ବଡ଼ଦେଉଳ ।

ଲିଙ୍ଗରାଜ ଭୁବନେଶ୍ୱରସ୍ଥ ଅସଂଖ୍ୟ ଶିବଲିଙ୍ଗ ମଧ୍ୟରେ ସର୍ବଶ୍ରେଷ୍ଠ ବୋଲି ତାଙ୍କ ନାମ ଲିଙ୍ଗରାଜ । ଲିଙ୍ଗରାଜଙ୍କୁ କୀର୍ତ୍ତିବାସ ବୋଲି ମଧ୍ୟ କହନ୍ତି । କୀର୍ତ୍ତି ଓ ବାସ ନାମକ ରାକ୍ଷସଦ୍ୱୟଙ୍କର ବଧର କାରଣ ବୋଲି ତାଙ୍କୁ କୀର୍ତ୍ତିବାସ

ଆଖ୍ୟା ପ୍ରଦତ୍ତ ହୋଇଅଛି । ପୁଣି କେହି କେହି 'କୀର୍ତ୍ତିବାସ' ଶବ୍ଦର ଭିନ୍ନାର୍ଥ ପ୍ରକାଶ କରନ୍ତି; ଯଥା କୀର୍ତ୍ତି=ସୁଯଶଃ, ବାସ=ଆଧାର; କୀର୍ତ୍ତିର ଆଧାର; କିନ୍ତୁ ଆମ୍ଭେମାନେ ପୂର୍ବୋକ୍ତ ପୌରାଣିକ ଉପାଖ୍ୟାନ ଦୃଷ୍ଟିରେ ପ୍ରଥମୋକ୍ତ ଅର୍ଥକୁ ଗ୍ରହଣ କରି ପାରୁଁ ।

ଲିଙ୍ଗରାଜ ସ୍ୱୟମ୍ଭୂଲିଙ୍ଗ କି ନା, ଏ ସମ୍ବନ୍ଧରେ ମତଭେଦ ଅଛି । ସ୍ୱର୍ଗୀୟ ଗୋପୀନାଥ ରାଓ ପ୍ରଣୀତ Hindu Iconography ପୁସ୍ତକରେ ଦେଖା-ଯାଏ, ବାମଦେବ ଶିବାଚାର୍ଯ୍ୟଙ୍କ ପୁତ୍ର ବ୍ୟାଘ୍ରପୁରବାସୀ ନିଗମଜ୍ଞାନ ଦେବ କର୍ତ୍ତୃକ ରଚିତ 'ଜୀର୍ଣ୍ଣୋଦ୍ଧାରଦଶକମ୍' ଗ୍ରନ୍ଥରେ ଯେଉଁ ସ୍ୱୟମ୍ଭୂ ଲିଙ୍ଗର ତାଲିକା ପ୍ରଦତ୍ତ ହୋଇଅଛି, ତନ୍ମଧ୍ୟରୁ ୩୦ ସଂଖ୍ୟକ ଲିଙ୍ଗଟି 'ଏକଗ୍ରାମ'ସ୍ଥ କୃତ୍ତିବାସ ବୋଲି ବର୍ଣ୍ଣିତ । 'ଏକଗ୍ରାମ' ବୋଧ ହୁଏ ଏକାମ୍ରକ ବା ଏକାମ୍ର । ଲିଙ୍ଗରାଜ ମନ୍ଦିରର ପ୍ରାଙ୍ଗଣ ମଧ୍ୟରେ ଗୋଟିଏ କ୍ଷୁଦ୍ର ଦେଉଳରେ ଏକାମ୍ରେଶ୍ୱର ବୋଲି ଗୋଟିଏ ମହାଦେବ ଅଛନ୍ତି; କେହି କେହି କହନ୍ତି, ଏହି ଏକାମ୍ରେଶ୍ୱର ଭୁବନେଶ୍ୱର କ୍ଷେତ୍ରର ଆଦ୍ୟ ଲିଙ୍ଗ; ଏହି ଏକାମ୍ରେଶ୍ୱରଙ୍କ ସମ୍ବନ୍ଧରେ କପିଳ-ସଂହିତା, ଏକାମ୍ରପୁରାଣାଦିରେ ବର୍ଣ୍ଣିତ ପୌରାଣିକ ଉପାଖ୍ୟାନମାନ ଦ୍ରଷ୍ଟବ୍ୟ; ଏହି ଏକାମ୍ରେଶ୍ୱର କୌଣସି ଲିଙ୍ଗ ନୁହନ୍ତି, ଗୋଟିଏ ସ୍ତମ୍ଭ ପରି ସ୍ଥୂଳ ପ୍ରସ୍ତର ମଧ୍ୟରେ ଗୋଟିଏ ଗହ୍ୱର ଅଛି; ତହିଁ ମଧ୍ୟରେ ମାଙ୍କଡ଼ା ପଥର ପରି ବନ୍ଧୁର ଶିଳା ଥିବାର ଦେଖାଯାଏ; ଏଥିର ଚତୁଃପାର୍ଶ୍ୱରେ ଯେଉଁ ଶକ୍ତିଟି ଅଛି, ତାହା ବର୍ତ୍ତମାନ ଭଗ୍ନଦଶାପନ୍ନ । କେହି କେହି କହନ୍ତି, ଏହି ଏକାମ୍ରେଶ୍ୱରହିଁ ସ୍ୱୟମ୍ଭୂ ଲିଙ୍ଗ, ଲିଙ୍ଗରାଜ ସ୍ୱୟମ୍ଭୂ ନୁହନ୍ତି । ପୁଣି କାହାର କାହାରଠାରୁ ଶୁଣିଲୁଁ, ଉଭୟ ଲିଙ୍ଗ ସ୍ୱୟମ୍ଭୂ । କୌଣସି କୌଣସି ସେବକ କହିଲେ—ଲିଙ୍ଗରାଜଙ୍କ ଶକ୍ତି ଉପରେ ଆମ୍ଭେମାନେ ଯେଉଁ ବନ୍ଧୁର ପ୍ରସ୍ତରବିଶିଷ୍ଟ ଲିଙ୍ଗ ଦର୍ଶନ କରୁ-ଅଛୁଁ, ତାହା ଏ ଲିଙ୍ଗର ଆଦ୍ୟ ଅବସ୍ଥା ନୁହେଁ; ଆଦ୍ୟରେ ଯେଉଁ ହିରଣ୍ୟଗର୍ଭ ଲିଙ୍ଗ ଥିଲେ, ତାହା ପରଶୁପଥର; ସେଥିରେ ତାମ୍ର ବା ଲୌହ ସ୍ପର୍ଶ ହେଲେ ସୁବର୍ଣ୍ଣ ହୋଇ ଯାଉଥିଲା; ତଦୁପରି ଏ ବନ୍ଧୁର ପ୍ରସ୍ତର ଓ ଶକ୍ତି

ଖଚିତ ହୋଇଅଛି ମାତ୍ର । ଏ ସମ୍ବନ୍ଧରେ ସ୍ଥିର ମତ ଦେବା ଅସମ୍ଭବ । ଏ ଲିଙ୍ଗର ଗାତ୍ରରେ କସ୍ତୁରୀଲେପନ ବିଷୟ ଆମ୍ଭେମାନେ ପୂର୍ବରୁ ଉଲ୍ଲେଖ କରିଅଛୁଁ । ଏ ଲିଙ୍ଗର ଚତୁଃପାର୍ଶ୍ୱରେ ଗୋଟିଏ ଯୋନି ଆକାରବିଶିଷ୍ଟ ବୃହତ୍ ଶଙ୍କୁ ଅଛି । ଲିଙ୍ଗରାଜଙ୍କୁ କେହି କେହି ବ୍ରହ୍ମ ସନାତନ ମୂର୍ତ୍ତି—ବ୍ରହ୍ମା ବିଷ୍ଣୁ ମହେଶ୍ୱରଙ୍କର ସମାବେଶ ବୋଲି କଳ୍ପନା କରିଅଛନ୍ତି ।

ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଓ ତାହାର ପ୍ରାଚୀର ଆଦି ।

ବଡ଼ଦେଉଳର ଚାରି ପାଖରେ ଗୋଟିଏ ପ୍ରାଙ୍ଗଣ ଅଛି; ଏ ପ୍ରାଙ୍ଗଣ ମଧ୍ୟରେ ଅନେକଗୁଡ଼ିଏ ସାନ ବଡ଼ ଦେଉଳ ନିର୍ମିତ ହୋଇଥିଲା; ସେଥି ମଧ୍ୟରୁ କେତୋଟି ଭଗ୍ନଦଶାପନ୍ନ, କେତୋଟି ଅର୍ଦ୍ଧଭଗ୍ନ, କେତୋଟିର ଅସ୍ତିତ୍ୱ ସୁଦ୍ଧା ନାହିଁ । ସମସ୍ତ ମନ୍ଦିର ମଧ୍ୟରୁ ବଡ଼ଦେଉଳ ଓ ପାର୍ବତୀମନ୍ଦିର ଦର୍ଶନୀୟ । ଏ ମନ୍ଦିରଦ୍ୱୟ ହିନ୍ଦୁ ଭାରତୀୟ ଶିଳ୍ପଚାତୁରୀର ଶ୍ରେଷ୍ଠତମ ନିଦର୍ଶନ ।

ପ୍ରାଙ୍ଗଣର ଦୈର୍ଘ୍ୟ ୫୨୦ ଫୁଟ ଓ ପ୍ରସ୍ଥ ୪୬୫ ଫୁଟ; ପ୍ରାଚୀରଟିର ବେଧ ପ୍ରାୟ ୭ ଫୁ ୭।୭ ଇଞ୍ଚ । ଏ ପ୍ରାଚୀରର ପୂର୍ବ, ଉତ୍ତର, ଦକ୍ଷିଣ ଦିଗରେ ତିନୋଟି ଦ୍ୱାର ଅଛି; ସିଂହଦ୍ୱାର ପୂର୍ବାଭିମୁଖୀନ । ସିଂହଦ୍ୱାରଠାରୁ ବଡ଼ ଦେଉଳ ପର୍ଯ୍ୟନ୍ତ ଅନେକଗୁଡ଼ିଏ ପାବଚ୍ଛ ଅଛି ।

ଲିଙ୍ଗରାଜ ବଡ଼ଦେଉଳ ଚାରି ଅଂଶରେ ବିଭକ୍ତ;—ବିମାନ, ଜଗମୋହନ, ନାଟମନ୍ଦିର, ଭୋଗମଣ୍ଡପ । ବିମାନଟି ପଞ୍ଚରଥବିଶିଷ୍ଟ ରେଖ ଦେଉଳ । ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ମହାଶୟ ଯେତେବେଳେ ଓଡ଼ିଶାକୁ ଆଗମନ କରି ଓଡ଼ିଶାର ମନ୍ଦିରମାନଙ୍କର ଐତିହାସିକ ତଥ୍ୟ ସଂଗ୍ରହ କରିଥିଲେ, ସେତେବେଳେ ଜଣେ ବ୍ରାହ୍ମଣଙ୍କୁ ଏ ମନ୍ଦିରର ଶିଖରଦେଶକୁ ମାପ ଫିତା ହାତରେ ପଠାଇଥିଲେ; କଳସର ଉପରିଭାଗରୁ ବିମାନର ନିମ୍ନ

ଦେଶ ପର୍ଯ୍ୟନ୍ତ ୧୬୦ ଫୁଟ ବୋଲି ସେ ମହାଶୟ ନିର୍ଣ୍ଣୟ କରିଅଛନ୍ତି । ପୂର୍ବଦ୍ୱାର ବାଟେ ବଡ଼ଦେଉଳ ଆଡ଼କୁ ଗଲେ ପ୍ରଥମେ ପଡ଼ିବ ଭୋଗମଣ୍ଡପ ।

ଭୋଗମଣ୍ଡପ—ବିମାନ ଓ ଜଗମୋହନର ଗଠନପ୍ରଣାଳୀ ଭୋଗମଣ୍ଡପ ଓ ନାଟମନ୍ଦିରଗଠନ ପ୍ରଣାଳୀଠାରୁ ସ୍ୱତନ୍ତ୍ର । ବିମାନ ଓ ଜଗମୋହନ ଏକସମୟରେ ଏବଂ ନାଟମନ୍ଦିର ଓ ଭୋଗମଣ୍ଡପ ଭିନ୍ନ ସମୟରେ ନିର୍ମିତ ହୋଇଥିଲା ବୋଲି ବିଶ୍ୱାସ କରାଯାଏ । ଡ଼ାକ୍ତର ରାଜେନ୍ଦ୍ରଲାଲ ମିତ୍ରଙ୍କ ମତରେ ଖ୍ରୀଷ୍ଟୀୟ ୬୧୬ ଅବ୍ଦଠାରୁ ଖ୍ରୀଷ୍ଟୀୟ ୮୧୧ ଅବ୍ଦ ମଧ୍ୟରେ କେଶରୀବଂଶୀୟ ରାଜା କମଳକେଶରୀଙ୍କ ରାଜତ୍ୱ ସମୟରେ ଏହି ଭୋଗମଣ୍ଡପ ନିର୍ମିତ ହୋଇଥିଲା । ପ୍ରଥମେ ଏଠାରେ ପଣ୍ଡିତମାନେ ଶାସ୍ତ୍ରାଲୋଚନା କରୁଥିଲେ; ପରେ ଛତ୍ରଭୋଗ ସମୟରେ ଏଠାରେ ମହାପ୍ରସାଦ ସ୍ଥାପିତ ହୋଇ ଆସୁଅଛି ।

ଭୋଗମଣ୍ଡପର ମଧ୍ୟଭାଗରେ ଗୋଟିଏ ସ୍ତମ୍ଭ ଦଣ୍ଡାୟମାନ; ଉପରର ଛାତ ପର୍ଯ୍ୟନ୍ତ ଏହା ବିସ୍ତୃତ; ଏହା ଭଗ୍ନଦଶାପନ୍ନ ହୋଇ ପତିତ ହେବାର ଆଶଙ୍କା ଥିବାରୁ ଏହାର କାରୁକାର୍ଯ୍ୟମାନ ଲୁଗାଇ ଦେଇ ଏହାର ଚାରି ପାଖରେ ପଲସ୍ତରା କରି ଦିଆଯାଇଅଛି ।

ଭୋଗମଣ୍ଡପର ପୀଠର (Plinth) ଉଚ୍ଚତା ଫୁ ୩।୩ ଇଞ୍ଚ, ଭୋଗମଣ୍ଡପର ବାହାର ପାଖର ଦୈର୍ଘ୍ୟ ଉତ୍ତର-ଦକ୍ଷିଣଭାବରେ ଫୁ ୫୬ ୨½ଇଞ୍ଚ; ଭିତର ମାପ ଫୁ ୪୨—½ଇଞ୍ଚ । ବାହାର ପାଖର ବାଡ଼ର ଉଚ୍ଚତା ଫୁ ୧୩।୬ ଇଞ୍ଚ ଏବଂ ଭିତରର ଉଚ୍ଚତା ୧୩ ଫୁଟ । ଏହାର ଉତ୍ତର ପାଖରେ ଯେଉଁ ପାବଚ୍ଛଶ୍ରେଣୀ ଅଛି, ତତ୍‌ସଂଲଗ୍ନରେ ଭୋଗମଣ୍ଡପର ଏକାଂଶରେ ଲକ୍ଷ୍ମୀନାରାୟଣ ମୂର୍ତ୍ତି ବିଦ୍ୟମାନ; ଲକ୍ଷ୍ମୀ ବିଷ୍ଣୁଙ୍କ କୋଳରେ ଆସୀନା; ଲକ୍ଷ୍ମୀଙ୍କ ପାଦଦେଶରେ ହସ୍ତୀ; ଏ ମୂର୍ତ୍ତିର ଗଠନ ଓ କାରୁକାର୍ଯ୍ୟ ଅତି ସୁନ୍ଦର; କିନ୍ତୁ ଏହା ଭଗ୍ନ ହୋଇଅଛି; ଏ ମୂର୍ତ୍ତି କଳାପାହାଡ଼ କର୍ତ୍ତୃକ ଭଗ୍ନ ହୋଇଅଛି ବୋଲି ପଣ୍ଡାମାନଙ୍କର ବିଶ୍ୱାସ । ଭୋଗମଣ୍ଡପର ପ୍ରବେଶ-

ଭୁବନେଶ୍ୱର ।

ଦ୍ୱାରର ଉତ୍ତର ଦକ୍ଷିଣକୁ ଗୋଟିଏ ସ୍ତମ୍ଭୋପରେ ବୃଷଭ ଓ ଗରୁଡ଼ ଦୁଇ ମୂର୍ତ୍ତି ସ୍ଥାପିତ; ଏହା ଯେହ ଶିବ ଓ ବିଷ୍ଣୁ ଉଭୟଙ୍କର ଓ ଲିଙ୍ଗରାଜ ହରିହରଙ୍କର ସମନ୍ୱୟ ବୋଲି ଗରୁଡ଼ ଓ ବୃଷଭ ଉଭୟ ଦେବତାଙ୍କ ବାହନ ସେଠାରେ ସ୍ଥାପିତ ବୋଲି କେହି କେହି ମତ ବ୍ୟକ୍ତ କରନ୍ତି ।

ନାଟମନ୍ଦିରଃ—ଭୋଗମଣ୍ଡପର ଠିକ ପଶ୍ଚିମକୁ ନାଟମନ୍ଦିର । ଏଠାରେ ନୃତ୍ୟ-ଗୀତାଦି ଦ୍ୱାରା ଦେବତାଙ୍କର ପୂଜା ହୁଏ । କେହି କେହି କହନ୍ତି, ମହାଦେବଙ୍କ ତାଣ୍ଡବନୃତ୍ୟ ଲାଗି ଏ ମନ୍ଦିର ନିର୍ମିତ ହୋଇଥିଲା; ଆମ୍ଭେମାନେ ମନେକରୁଁ, ଯେଉଁ ସମୟରେ ଭୁବନେଶ୍ୱର ସମୃଦ୍ଧିଶାଳୀ ଥିଲା, ଯେଉଁ ସମୟରେ ଲିଙ୍ଗରାଜଙ୍କ ସେବା ପୂଜା ନୀତି ଆଦି ଯଥାରୀତିରେ ସମ୍ପନ୍ନ ହେଉଥିଲା, ସେ ସମୟରେ ଏ ନାଟମନ୍ଦିରରେ ନୃତ୍ୟ ଗୀତାଦି ହେଉଥିଲା । ଏ ନାଟମନ୍ଦିର ଜଗମୋହନ ଓ ଭୋଗମଣ୍ଡପର ମଧ୍ୟଭାଗରେ ଅବସ୍ଥିତ । ଭୋଗମଣ୍ଡପ ନିର୍ମିତ ହେବା ପରେ ଅର୍ଥାତ୍ ଖ୍ରୀଷ୍ଟୀୟ ୧୦୯୯ ଅବ୍ଦରୁ ୧୧୦୪ ଅବ୍ଦ ମଧ୍ୟରେ କେଶରୀବଂଶୀୟ ଶାଳିନୀ କେଶରୀଙ୍କ ରାଣୀଙ୍କ ଆଦେଶ ଅନୁସାରେ ନିର୍ମିତ ହୋଇଥିଲା ।

ଶ୍ରୀଯୁକ୍ତ ମନୋମୋହନ ଗଙ୍ଗୋପାଧ୍ୟାୟ ଲେଖିଅଛନ୍ତି, 'ନାଟମନ୍ଦିର ୧୦୯୯ ଅବ୍ଦରୁ ୧୧୦୪ ଅବ୍ଦ ମଧ୍ୟରେ ଶାଳିନୀ କେଶରୀଙ୍କ ରାଣୀଙ୍କ କର୍ତ୍ତୃକ ନିର୍ମିତ; କିନ୍ତୁ ସେ ଲେଖିଅଛନ୍ତି, ଭୋଗମଣ୍ଡପ ନିର୍ମିତ ହେବା ପରେ ନାଟମନ୍ଦିର ନିର୍ମିତ; ତାଙ୍କ ମତରେ ଭୋଗମଣ୍ଡପ ତ୍ରୟୋଦଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ନିର୍ମିତ । ଗଙ୍ଗୋପାଧ୍ୟାୟ ମହାଶୟଙ୍କର ଯୁକ୍ତି ପରସ୍ପର ବିରୋଧୀ । ସେ ମହାଶୟ କତିପୟ ଇଉରୋପୀୟ ପଣ୍ଡିତଙ୍କ ମତ ଅନୁସରଣ କରିବାକୁ ଯାଇ ଗୋଳମାଳରେ ପଡ଼ିଯାଇଅଛନ୍ତି । ଏ ସମ୍ବନ୍ଧରେ ଡାକ୍ତର ରାଜେନ୍ଦ୍ରଲାଲଙ୍କ ମତହିଁ ଗ୍ରହଣୀୟ ।

ନାଟମନ୍ଦିରଟି ପ୍ରାୟ ୨।୮ ଇଞ୍ଚ ଉଚ୍ଚ ପୀଠ (Pliuth) ଉପରେ ଅବସ୍ଥିତ । ଏ ନାଟମନ୍ଦିରଟି ପୀଢ଼ ଦେଉଳ ଶ୍ରେଣୀର; ନାଟମନ୍ଦିରଟି ସମଚତୁଷ୍କୋଣ-

ବିଶିଷ୍ଟ । ଏହାର ପ୍ରତ୍ୟେକ ପାର୍ଶ୍ୱର ଲମ୍ବା ୫୬ ଫୁଟ, ଏଥିର ବାଡ଼ର ଉଚ୍ଚତା ଫୁ ୧୯।୪ ଇଞ୍ଚ, ଗୃହଗୋଟି ନବାଂଶ ଖିଲଣ ଉପରେ ଏହାର ଛାତ ରକ୍ଷିତ; ନାଟମନ୍ଦିରର ଭିତର ପାଖର ମାପ ଫୁ ୩୮।୬ ଇଞ୍ଚ ଲେଖାଏଁ । ନାଟମନ୍ଦିର ମଧ୍ୟରେ ଫୁ ୧୩।୧୦ ଇଞ୍ଚ ଉଚ୍ଚତାରେ ସ୍ତମ୍ଭ ଗୃହଗୋଟି ରହିଅଛି । ସ୍ତମ୍ଭଠାରୁ କାନ୍ଥର ଦୂରତା ପ୍ରାୟ ଫୁ ୭।୧୦, ଇଞ୍ଚ । ପୂର୍ବଦିଗ ଛଡ଼ା ନାଟମନ୍ଦିରର ଦକ୍ଷିଣ ପଶ୍ଚିମ ଓ ଉତ୍ତର ପାର୍ଶ୍ୱରେ ଦ୍ୱାର ଅଛି ।ପଶ୍ଚିମ ଦ୍ୱାର ଅପେକ୍ଷା ଉତ୍ତର, ଦକ୍ଷିଣ ଦ୍ୱାରଦ୍ୱୟ ଶ୍ରେଷ୍ଠ । ପଶ୍ଚିମ ଦ୍ୱାର ଜଗମୋହନ ସହିତ, ପୂର୍ବ ଦ୍ୱାର ଭୋଗମଣ୍ଡପ ସହିତ ସଂଲଗ୍ନ । ପଶ୍ଚିମ ଦ୍ୱାରର ଲମ୍ବା ଚଉଡ଼ା ଫୁ ୧୪।୯ ଇଞ୍ଚ × ଫୁ ୭।୭ ଇଞ୍ଚ; ଦକ୍ଷିଣ-ପୂର୍ବ ଓ ଦକ୍ଷିଣ-ପଶ୍ଚିମ ଦିଗସ୍ଥ ଦ୍ୱାରଦ୍ୱୟ ଫୁ ୧୦।୧ × ଫୁ ୪।୬½; ଦକ୍ଷିଣ ଦିଗସ୍ଥ ଦ୍ୱାରର ମାପ ଓ ଉତ୍ତର ଦିଗସ୍ଥ ଦ୍ୱାରର ମାପ ସମାନ ।

ଜଗମୋହନ—ନାଟମନ୍ଦିରର ପଶ୍ଚିମରେ ଜଗମୋହନ ଅବସ୍ଥିତ; ଜଗମୋହନ ଓ ବିମାନର ଗଠନପ୍ରଣାଳୀ ଏକଶ୍ରେଣୀର । ପ୍ରଭେଦ ମଧ୍ୟରେ ବିମାନଟି ରେଖ ଦେଉଳ ଓ ଜଗମୋହନଟି ପୀଢ଼ ଦେଉଳ । ଦକ୍ଷିଣପାର୍ଶ୍ୱରେ ଫୁ ୮।୧୫ ଇଞ୍ଚ ଲମ୍ବ ଓ ଫୁ ୩।୯ ଇଞ୍ଚ ଚଉଡ଼ାର ଗୋଟିଏ ଦ୍ୱାର ଅଛି; ଏହି ଦ୍ୱାର ନିକଟରେ ତିନୋଟି ପାହାଚ; ପାହାଚର ବାମପାର୍ଶ୍ୱରେ ଲିଙ୍ଗରାଜଙ୍କ ଚଳନ୍ତି ପ୍ରତିମା ଚନ୍ଦ୍ରଶେଖରଙ୍କ ମନ୍ଦିର । ବିମାନ ଓ ଜଗମୋହନ ଉଭୟ ଯଯାତିକେଶରୀଙ୍କ ରାଜତ୍ୱ କାଳରେ ଆରବ୍ଧ ହୋଇ ଲଲାଟେନ୍ଦ୍ର କେଶରୀଙ୍କ ରାଜତ୍ୱ କାଳରେ ସମାପ୍ତ ହୋଇଥିଲା; ଲିଙ୍ଗରାଜ ମନ୍ଦିରର ସମୟ ନିରୂପଣ ପ୍ରସଙ୍ଗରେ ଆମ୍ଭେମାନେ ଏଥିର ସବିଶେଷ ଆଲୋଚନା କରିଅଛୁଁ । 'ଗଜାଷ୍ଟେଷୁ ମିତେ ଜାତେ ଶକାବ୍ଦେ କୀର୍ତ୍ତିବାସସଃ' ଇତ୍ୟାଦି ଶ୍ଳୋକଟି ଡାକ୍ତର ରାଜେନ୍ଦ୍ରଲାଲ ମିତ୍ରଙ୍କ ପିତା ଲିଙ୍ଗରାଜ ମନ୍ଦିରରେ ଖୋଦିତ ହୋଇ ଥିବାର ଦେଖି ତାଙ୍କ ଡାଇରି ବହିରେ ନୋଟ କରି ନେଇଥିଲେ । ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ତାହା ବହୁ ଆୟାସ ସତ୍ତ୍ୱେ ପ୍ରାପ୍ତ ହୋଇ ନାହାନ୍ତି ।

ଭୁବନେଶ୍ୱର ।

ବିମାନ—ବିମାନ ବା ଅସଲ ଦେଉଳ ଯହିଁରେ ଲିଙ୍ଗରାଜ ମହାପ୍ରଭୁ ବିଜେ କରିଅଛନ୍ତି, ତାହା ପଞ୍ଚରଥ ଶ୍ରେଣୀର ରେଖ ଦେଉଳ । ଏ ଦେଉଳର କୌଣସି ପୀଠ ( Plinth ) ନାହିଁ; ଏକାବେଳକେ ତଳପତନଠାରୁ ଦେଉଳର ଜାଙ୍ଘ ଆରମ୍ଭ ହୋଇଅଛି; ସାଧାରଣ ରେଖ ଦେଉଳ ପରି ଏହାର ବାଡ଼ର ଉପର ଜାଙ୍ଘ, ତଳ ଜାଙ୍ଘ, ଉପର ବରଣ୍ଡି, ତଳ ବରଣ୍ଡି, ବନ୍ଧନ ଏହି ପାଞ୍ଚଟି ବିଭାଗ ଅଛି । ଏହାର ତଳ ଜାଙ୍ଘ ଫୁ ୧୦।୪୫ ଇଞ୍ଚ, ତଳ ବରଣ୍ଡି ଫୁ ୯।୧୦ ଇଞ୍ଚ, ବନ୍ଧନ ୩ ଫୁଟ, ଉପର ବରଣ୍ଡି ଫୁ ୯।୩ ଇଞ୍ଚ, ଉପର ଜାଙ୍ଘ ୧୧ ଫୁଟ ଅଟେ । ଉପର ଜାଙ୍ଘ ଦଶଭାଗରେ ବିଭକ୍ତ; ଏହାକୁ ଦଶକାମ ବୋଲି ଯାଏ । ଦ୍ୱିତୀୟ ବା ଉପର ଜାଙ୍ଘ ଉପରେ କନକପଗରେ ପାଞ୍ଚ ଗୋଟି ବିଭାଗ ମଧ୍ୟ ଦେଖାଯାଏ । ଅନର୍ଥ ପଗରେ ବାଡ଼ର ଉପର ଅଂଶରେ କର୍ଣ୍ଣ ଓ ବିଧନ୍ତର ୯ ଗୋଟି ବିଭିନ୍ନ ଅଂଶ ଦୃଷ୍ଟ ହୁଏ । ରାହାପଗରେ ଉତ୍ତର ଦିଗରେ ବାଡ଼ ଉପରେ ଗୋଟିଏ କ୍ଷୁଦ୍ର ସିଂହ ସ୍ଥାପିତ; ତଦୁପରି 'ପଦ୍ମଭୋ' । 'ଭୋ' ର ଉପରଭାଗ ଦ୍ୱିତୀୟ ଭୂମି ସହିତ ସମାନ । ତଦୁପରି ଝାପ୍‌ସା ସିଂହ; ଏହାର ଊର୍ଦ୍ଧ୍ୱଦେଶ ତୃତୀୟ ଭୂମିର ମଧ୍ୟଭାଗ ସହିତ ସମାନ । ଷଷ୍ଠ ଭୂମିର ଉଚ୍ଚତା ସହିତ ସମାନ ସ୍ଥାନରେ ଜଗମୋହନ ଆଡକୁ ମୁହଁ କରି ଗୋଟିଏ ଉଡ଼ା ଜଗସିଂହ ପ୍ରତିମୂର୍ତ୍ତି ଅଛି ।

ବିମାନର ପୂର୍ବ ପାଖକୁ ଲାଗି ମୋହନ; କିନ୍ତୁ ଉତ୍ତର, ପଶ୍ଚିମ ଓ ଦକ୍ଷିଣ ଦିଗରେ ବିମାନ ଦେହରେ ତିନୋଟି ଦୋମହଲା ବଖରା ପରି ହୋଇ-ଅଛି । ସେହି ଦୋମହଲା ବଖରାମାନଙ୍କ ମଧ୍ୟରୁ ଉତ୍ତରରେ ପାର୍ବତୀ; ଏ ପାର୍ବତୀଙ୍କୁ ସ୍ଥାନୀୟ ସେବକମାନେ ନିଶାପାର୍ବତୀ କହୁଅଛନ୍ତି; କିନ୍ତୁ 'ନିଶା ପାର୍ବତୀ' କହିବାର କି କାରଣ, ତାହା ସେମାନେ କହି ପାରିଲେ ନାହିଁ । ପଶ୍ଚିମରେ କାର୍ତ୍ତିକ; ଦକ୍ଷିଣରେ ଗଣେଶ । ବିମାନ ଦେହକୁ ଲାଗି ଏ ମୂର୍ତ୍ତିଗୁଡ଼ିକ ସ୍ଥାପିତ ହୋଇଅଛି; କିନ୍ତୁ ସେମାନଙ୍କ ସମ୍ମୁଖକୁ ରେଖ ଦେଉଳ ପରି ଯେଉଁ ଅଂଶଟିମାନ ଅଛି, ତାହା ପାର୍ଶ୍ୱଦେବତାମାନଙ୍କର ମୋହନ ସ୍ୱରୂପ ବ୍ୟବହୃତ ।




ଭୁବନେଶ୍ୱରର ଅନ୍ୟାନ୍ୟ ଶିବମନ୍ଦିରର ଶିଖର-ଦେଶରେ ପାର୍ଶ୍ୱାଙ୍କିତ ଚିତ୍ରପରି ତ୍ରିଶୂଳ ଚିହ୍ନ ଅଛି; କିନ୍ତୁ ଲିଙ୍ଗରାଜମନ୍ଦିରରେ ତ୍ରିଶୂଳ ନାହିଁ; ତାହାର ଆକୃତି ଧନୁ ପରି । କେହି କେହି ଏହାକୁ ଶିବଙ୍କର ପିନାକ ଧନୁର ପ୍ରତିକୃତି ବୋଲି କହନ୍ତି ।




କେହି କେହି ମଧ୍ୟ କହନ୍ତି, ଥରେ ବଜ୍ରାଘାତରେ ଗୋଟିଏ ପାଖ ଉଡ଼ି ଯାଇଅଛି । ଭୁବନେଶ୍ୱରରେ ଏ ସମ୍ବନ୍ଧରେ ମଧ୍ୟ ଗୋଟିଏ କିମ୍ବଦନ୍ତୀ ପ୍ରଚଳିତ ଅଛି । 'ନିଶଙ୍କ' ଉପାଧିଧାରୀ ଦଳେ ଡକାଇତ ଥରେ ପୁରୀର ରାଜାଙ୍କୁ ନୋଟିସ ଦେଲେ, ଆମ୍ଭେମାନେ ଆଜି ଲିଙ୍ଗରାଜ ଦେଉଳରେ ଚୋରି କରିବୁଁ । ତୁମ୍ଭେ ଯେତେ ସତର୍କ ରହିଲେ ମଧ୍ୟ ଆମ୍ଭମାନଙ୍କୁ ଧରି ପାରିବ ନାହିଁ । ରାଜାଙ୍କ ତରଫରୁ ଅନେକ ଲୋକ ଜଗି ରହିଲେ; କିନ୍ତୁ ଡକାଇତମାନେ ଏଡ଼େ ବାହାଦୂର ଯେ, ବଡ଼ଦେଉଳର ଶିଖରଦେଶରୁ ତ୍ରିଶୂଳର ଗୋଟିଏ ପାଖ କାଟି ନେଇଗଲେ, ପ୍ରହରୀମାନେ ଜାଣି ପାରିଲେ ନାହିଁ । ରାଜା ଏଥିରେ ସନ୍ତୋଷ ଲାଭ କରି ଚୋରମାନଙ୍କ 'ନିଶଙ୍କ' ପଣିଆ ହେତୁରୁ ସେମାନଙ୍କୁ 'ନିଶଙ୍କ' ଉପାଧି ଦେଲେ ।

ବିମାନଗାତ୍ରସ୍ଥ ଅନ୍ୟାନ୍ୟ ମୂର୍ତ୍ତି ଓ ପାର୍ଶ୍ୱଦେବତାମାନଙ୍କ ବିଷୟ ଆମ୍ଭେମାନେ କ୍ରମରେ ସ୍ୱତନ୍ତ୍ର ଆଲୋଚନା କରିବୁଁ ।

## ବିଶ୍ୱକର୍ମା ।

ଲିଙ୍ଗରାଜ ମନ୍ଦିରର ପଶ୍ଚିମ ଦିଗରେ ସେହି ପ୍ରାଙ୍ଗଣ ମଧ୍ୟରେ ବିଶ୍ୱକର୍ମାଙ୍କ ଦେଉଳ । ବିଶ୍ୱକର୍ମା ଆଉ କିଛି ମୂର୍ତ୍ତି ନୁହନ୍ତି, ଗୋଟିଏ ଲିଙ୍ଗ; କରାଳଦ୍ୱାରା ସେ ଲିଙ୍ଗର ନାସିକା ଓ ମୁଖ ପ୍ରସ୍ତୁତ ହୋଇଅଛି; ସେ ଲିଙ୍ଗଟି

ଭୁବନେଶ୍ୱର ।

ପ୍ରାପ୍ତ ଦେଢ଼ଫୁଟ ଉଚ୍ଚ । ପ୍ରବାଦ ଅଛି, ବହ୍ନିକର୍ମୀ ଭୁବନେଶ୍ୱରଙ୍କ ମନ୍ଦିରାଦି ନିର୍ମାଣରେ ସହାୟତା କରିଥିବାରୁ ସେ ମନ୍ଦିର ମଧ୍ୟରେ ପୂଜିତ ହୋଇ-ଅଛନ୍ତି ।

ପାର୍ବତୀ ମନ୍ଦିର ।

ଲିଙ୍ଗରାଜମନ୍ଦିର ପ୍ରାଙ୍ଗଣର ବାୟବ୍ୟ କୋଣରେ ଭଗବତୀ ମନ୍ଦିର; ଏ ମନ୍ଦିରଟିର ମଧ୍ୟ ଚାରିଗୋଟି ଅଂଶ; ବିମାନ, ଜଗମୋହନ, ନାଟମନ୍ଦିର ଏବଂ ଭୋଗମଣ୍ଡପ । ଏ ମନ୍ଦିର ଆକାରରେ କ୍ଷୁଦ୍ର ହେଲେହେଁ ଏହାର କାରୁକାର୍ଯ୍ୟ ଅତି ସୁନ୍ଦର ଓ ମନୋମୁଗ୍‌ଧକର । ଜଗମୋହନର କାରୁକାର୍ଯ୍ୟ ଅତ୍ୟୁତ୍କୃଷ୍ଟ । ସେ ଜଗମୋହନ ଗାତ୍ରରେ ଖୋଦିତ ପୁଷ୍ପ ଲତା ଜୀବଜନ୍ତୁ ପ୍ରକୃତ ସଜୀବ ଓ ବାସ୍ତବ ପରି ପ୍ରତୀୟମାନ ହୁଏ । ଦିକ୍‌ପତି ମୂର୍ତ୍ତିମାନ ବର୍ତ୍ତମାନ ନାହିଁ; ଲିଙ୍ଗରାଜ ଦେଉଳର ପ୍ରସ୍ତରଖଣ୍ଡମାନଙ୍କ ବର୍ଣ୍ଣ ଅପେକ୍ଷା ଏ ମନ୍ଦିରର ପ୍ରସ୍ତରର ବର୍ଣ୍ଣ ଅଧିକ ଲାଲ; ନାଲି ପୋଡ଼ ଇଟାର ବର୍ଣ୍ଣ ପରି ଏହାର ବର୍ଣ୍ଣ; ଏ ମନ୍ଦିରର କାରୁକାର୍ଯ୍ୟାଦି ଅତି ମନୋହର ହେଲେହେଁ ତାହା ଅନ୍ୟାନ୍ୟ କ୍ଷୁଦ୍ର ମନ୍ଦିରଦ୍ୱାରା ଏପରି ଆବୃତ ହୋଇଅଛି ଯେ, ତାହାର କାରୁକାର୍ଯ୍ୟମାନ ଦର୍ଶକର ନୟନାନ୍ତରାଳରେ ରହିଅଛି । ଏ ମନ୍ଦିର ଖ୍ରୀଷ୍ଟୀୟ ୮୭୫ ଅବ୍ଦଠାରୁ ୮୯୦ ଅବ୍ଦ ମଧ୍ୟରେ ଯଜାତି କେଶରୀଙ୍କ ରାଜତ୍ୱ-କାଳରେ ନିର୍ମିତ । ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ମହାଶୟଙ୍କ ମତରେ ବାମାଚାର ତନ୍ତ୍ରମତ ପ୍ରଚାର କାଳରେ ଏ ମନ୍ଦିର ନିର୍ମିତ ହୋଇଥିଲା ।

ଏ ମନ୍ଦିରସ୍ଥ ପାର୍ବତୀ ମୂର୍ତ୍ତି ସୁଚିକ୍କଣ ପ୍ରସ୍ତରରେ ନିର୍ମିତ; ପଦ୍ମାସନା, ସିଂହବାହିନୀ ମୂର୍ତ୍ତି; ଚୂଆ, ମଥାଘଷା, ସିନ୍ଦୂର ପ୍ରଭୃତି ଲାଗି ଏ ମୂର୍ତ୍ତିର ମୁଖଶ୍ରୀ ମଳିନ ହୋଇ ଯାଇଅଛି; ପାର୍ବତୀଙ୍କ ମସ୍ତକୋପରି ଖୋଦିତ ମୁକୁଟର କାରୁକାର୍ଯ୍ୟ ଅତି ସୁନ୍ଦର; ଅନେକ ଭଙ୍ଗ ଓ ଭଙ୍ଗୀରେ ଏ ମୁକୁଟଟି ନିର୍ମିତ ହୋଇଅଛି । ପାର୍ବତୀ ଯେଉଁ ପଦ୍ମପୁଷ୍ପଟି ଉପରେ ବସିଅଛନ୍ତି, ତାହାର ପାଖୁଡ଼ାଗୁଡ଼ିକ ଅତି ସ୍ୱାଭାବିକ ରୀତିରେ ଖୋଦିତ । ଏ ମୂର୍ତ୍ତିର



ଭଗବତୀମନ୍ଦିରସ୍ଥ ଭଗବତୀ ମୂର୍ତ୍ତି ।

୭୨ ପୃଷ୍ଠା (କ)

ଦକ୍ଷିଣ ହସ୍ତରେ ନାଡ଼ଯୁକ୍ତ ପଦ୍ମପୁଷ୍ପ, ବାମ ହସ୍ତରେ କୁମ୍ଭ; କୁମ୍ଭଟି ସାମାନ୍ୟ ଭଗ୍ନ ହୋଇଅଛି ।

ପାର୍ବତୀଙ୍କ ପାଦଦେଶରେ ଅନେକଗୁଡ଼ିଏ କ୍ଷୁଦ୍ର ମୂର୍ତ୍ତି ରହିଅଛି; ସେଗୁଡ଼ିକ କି ମୂର୍ତ୍ତି, ତାହା ବର୍ତ୍ତମାନ ସ୍ପଷ୍ଟ ଜଣା ପଡ଼ୁ ନାହିଁ; ଶିବାଗଣ ( ପାର୍ବତୀଙ୍କ ଅନୁଚର ) ବୋଲି ଅନୁମାନ କରାଯାଏ ।

## ଗୋପାଳନୀ ବା ଭୁବନେଶ୍ୱରୀ ।

ଲିଙ୍ଗରାଜମନ୍ଦିର ପ୍ରାଙ୍ଗଣରେ ଆଉ ଗୋଟିଏ ମନ୍ଦିର ଅଛି; ତାହାକୁ ଶ୍ରୀଯୁକ୍ତ ମନୋମୋହନ ଗଙ୍ଗୋପାଧ୍ୟାୟ ମହାଶୟ ଗୌରୀଗୃହ ଦେଉଳ ଶ୍ରେଣୀର ବୋଲି ନିର୍ଣ୍ଣୟ କରିଅଛନ୍ତି । ଏମନ୍ଦିରର ଉର୍ଦ୍ଧ୍ୱଦେଶର ଖିଲଣରେ ( ଗମ୍ବୁଜ—Dome ) ଅନେକ ଗୁଡ଼ିଏ ସ୍ତମ୍ଭ ବ୍ୟବହୃତ ହୋଇଅଛି; ଏ ମନ୍ଦିରଟି ଗୋପାଳନୀ ବା ଭୁବନେଶ୍ୱରୀ ଦେବୀଙ୍କର । ଲିଙ୍ଗରାଜ ମନ୍ଦିର ବା ବଡ଼ଦେଉଳର ଦକ୍ଷିଣସ୍ଥ ସାବିତ୍ରୀ ମନ୍ଦିର ମଧ୍ୟ ଗୌରୀଗୃହ ଶ୍ରେଣୀର ।

ଏହି ମନ୍ଦିରର ଅଧିଷ୍ଠାତ୍ରୀ ଦେବୀ ଭୁବନେଶ୍ୱରୀ ଶିବପୁରାଣୋକ୍ତ ଗୋପାଳନୀ; ଏହି ଗୋପାଳନୀ ଗୋବୃନ୍ଦଙ୍କୁ ଗୋସାଗରରେ ଜଳପାନ କରାଇ ଏକାମ୍ର ବନରେ ଶିବଲିଙ୍ଗ ଉପରେ ଦୁଗ୍ଧ ଦୋହନ କରୁଥିବାର ଶିବପୁରାଣରେ ବର୍ଣ୍ଣିତ ହୋଇଅଛି । ବର୍ତ୍ତମାନ ଯେଉଁ ମୂର୍ତ୍ତି ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୁଏ, ତାଙ୍କର ସମ୍ପୂର୍ଣ୍ଣାଙ୍ଗ ନାହିଁ; କେବଳ କଟିଦେଶରୁ ରହିଅଛି; କେହି କେହି କହନ୍ତି, କଳାପାହାଡ଼ ତାଙ୍କ କଟିଦେଶରୁ ଭଗ୍ନ କରି ଦେଇଅଛି । ଭଗବତୀ ମନ୍ଦିରସ୍ଥ ଭଗବତୀ ମୂର୍ତ୍ତି ତୁଳନାରେ ଏ ମୂର୍ତ୍ତିର କାରୁକାର୍ଯ୍ୟ ସୁନ୍ଦର ନ ହେଲେହେଁ, ଏହାଙ୍କର କ୍ଷମତା ଅଧିକ । ଲିଙ୍ଗରାଜଙ୍କ ପୂଜା ଆଦି ସଙ୍ଗେ ସଙ୍ଗେ ଏହାଙ୍କର ଦୈନିକ ପୂଜା ଆଦି ବିଧିମତେ ସମ୍ପାଦିତ ହୋଇଥାଏ । ଏ ମୂର୍ତ୍ତିର [illegible] ନିମ୍ନ ଦେଶକୁ ... [illegible]

ପାପୁଲି ଉପରକୁ ଖୋଲା ହୋଇ ରହିଅଛି; ଦକ୍ଷିଣ ହସ୍ତ ଊର୍ଦ୍ଧ୍ୱକୁ; ଦକ୍ଷିଣ ହସ୍ତରେ ପଦ୍ମଫୁଲ ପରି ଗୋଟିଏ ପୁଷ୍ପ ଧରିଅଛନ୍ତି; ପୁଷ୍ପଟିକୁ ସେବକମାନେ ପଦ୍ମ ବୋଲି ଚଳାଇ ଦେଉଥିଲେ ମଧ୍ୟ, ତାହାର ଆକାର ଠିକ୍ ପଦ୍ମ ପରି ହୋଇ ନାହିଁ । କୌଣସି କୌଣସି ସେବକଙ୍କ ମୁଖରୁ ଶୁଣିଲୁଁ, ପ୍ରଥମେ ଯେଉଁ ଭୁବନେଶ୍ୱରୀ ମୂର୍ତ୍ତି ଏ ମନ୍ଦିରରେ ପୂଜା ପାଉଥିଲେ, ବର୍ତ୍ତମାନ ମୂର୍ତ୍ତି ସେ ମୂର୍ତ୍ତି ନୁହେଁ; ପୂର୍ବର ମୂର୍ତ୍ତି ଅତି କ୍ଷମତାଶାଳୀ ଥିଲେ; ତାଙ୍କୁ କୌଣସି ବ୍ରାହ୍ମଣ ପକ୍ଷରେ ପୂଜା କରି ତାଙ୍କର ସନ୍ତୋଷ ବିଧାନ କରିବା ଅସମ୍ଭବ ହେବାରୁ ତାଙ୍କର ମୂର୍ତ୍ତିକୁ ନିମ୍ନରେ ଲୁଚାଇ ଦେଇ ଏ ନୂତନ ମୂର୍ତ୍ତି ସ୍ଥାପନ କରାଯାଇଅଛି; କିନ୍ତୁ ଏ ଉକ୍ତିରେ କୌଣସି ସତ୍ୟ ନିହିତ ଥିବାର ଆମ୍ଭେମାନେ ବିଶ୍ୱାସ କରି ପାରୁ ନାହୁଁ ।

## ବୃଷଭ ମନ୍ଦିର ଓ ବୃଷଭ ।

ବଡ଼ ଦେଉଳର ନାଟ ମନ୍ଦିରର ଉତ୍ତର ଦିଗରେ ନାଟ ମନ୍ଦିରକୁ ଲାଗି ଗୋଟିଏ ପାଡ଼ି ଦେଉଳ ମଧ୍ୟରେ ଗୋଟିଏ ବୃହଦାକାର ସଜୀବ ବୃଷଭ ତୁଲ୍ୟ ବୃଷଭ ଶୋଇଅଛି । ଏ ବୃଷଭଟିର ଉଚ୍ଚତା ପ୍ରାୟ ପାଞ୍ଚ ଫୁଟ । ଏହାର କାନ, ଆଖି, ଚୂଳ, ପିଠିଶିରା, ଗୋଡ଼, ଖୁରା, ପଗ, ଲାଙ୍ଗୁଳ, ଶୋଇବା ଓ ଗୋଡ଼ ଭାଙ୍ଗିବାର ଠାଣି ଏ ସମସ୍ତ ନିରୀକ୍ଷଣ କରି ଦେଖିଲେ ଉତ୍କଳୀୟ ଶିଳ୍ପୀମାନେ ଜୀବଜନ୍ତୁଙ୍କର ସ୍ୱଭାବାଦି କିପରି ପର୍ଯ୍ୟବେକ୍ଷଣ କରି ସେମାନଙ୍କ ମୂର୍ତ୍ତି ନିର୍ମାଣ କରୁଥିଲେ, ତହିଁର ଯଥେଷ୍ଟ ପରିଚୟ ମିଳେ । ଲିଙ୍ଗରାଜ ମନ୍ଦିର ପ୍ରାଙ୍ଗଣ ମଧ୍ୟରେ ଏ ବୃଷଭଟି ସର୍ବୋତ୍କୃଷ୍ଟ ଦର୍ଶନୀୟ ବସ୍ତୁ ।

କିମ୍ବଦନ୍ତୀ ଅଛି, ଏ ବୃଷଭ ମନ୍ଦିରର ପଶ୍ଚିମକୁ ଯେଉଁ ବରୁଣ ଗଛ ଅଛି, ତାହା କଳ୍ପବୃକ୍ଷ, ଏ ବରୁଣ ଗଛ ଆବହମାନକାଳରୁ, ଅନ୍ତତଃ ଲିଙ୍ଗରାଜ ମନ୍ଦିର ନିର୍ମାଣ କାଳରୁ ସେହି ଅବସ୍ଥାରେ ଅଛି, ତାହାର ଆକାର ବଡ଼ ବା ସାନ ହେଉ ନାହିଁ; ବୃଷଭ ସେହି ବରୁଣ ଗଛର ପତ୍ର ଖାଇବାକୁ

ଗ୍ରୀବା ଠିକ ରହିଅଛି; ଏ ବୃଷଭ ଯେଉଁ ଦିନ ଗୃହ ଖୁଣ୍ଟି ଠିକ ଉଠିବ ଓ ସେ ବରୁଣ ଗଛକୁ ଖାଇବ, ସେହି ଦିନ କଳିଯୁଗ ଶେଷ ହେବ । ଓଡ଼ିଶାର କାହିଁକି, ଭାରତର ସମସ୍ତ ତୀର୍ଥରେ ଅନେକ କିମ୍ବଦନ୍ତୀ ପ୍ରଚଳିତ ଅଛି, ସେ ସମସ୍ତରେ କୌଣସି ସତ୍ୟ ନିହିତ ଥାଉ ବା ନ ଥାଉ, ସେଗୁଡ଼ିକ ଉପନ୍ୟାସ ତୁଲ୍ୟ ସୁଶ୍ରାବ୍ୟ । ଏ କଳ୍ପବୃକ୍ଷ ବା ବରୁଣ ଗଛ ନିକଟରେ ଗୋଟିଏ ମୂର୍ତ୍ତି ଅଛି; ତାହାର ଗଠନପ୍ରଣାଳୀରେ ଟିକିଏ ବିଶେଷତ୍ୱ ଅଛି; ତାହାକୁ ଜଣେ ସ୍ଥାନୀୟ ଶିଳ୍ପୀ ଆମ୍ଭମାନଙ୍କୁ ଉଦରସ୍ଫୀନାବସ୍ଥାପୂର୍ଣ ମୂର୍ତ୍ତି ବୋଲି ଦେଖାଇ ଦେଲା ।

## ବଡ଼ଦେଉଳର ଅନ୍ୟାନ୍ୟ ମୂର୍ତ୍ତି ।

କୀର୍ତ୍ତିମୁଖ—ଓଡ଼ିଶାର ଅନ୍ୟାନ୍ୟ ଶିବମନ୍ଦିର ତୁଲ୍ୟ ଲିଙ୍ଗରାଜ ମନ୍ଦିରର ସମ୍ମୁଖସ୍ଥ ଦ୍ୱାରର ଊର୍ଦ୍ଧ୍ୱଦେଶରେ ଗୋଟିଏ କୀର୍ତ୍ତିମୁଖ ରହିଅଛି । 'ଭୋ' ଜାତୀୟ ଭାସ୍କର୍ଯ୍ୟଠାରୁ ଏହା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ପଦ୍ମପୁରାଣାନ୍ତର୍ଗତ କାର୍ତ୍ତିକମାହାତ୍ମ୍ୟ ପ୍ରସଙ୍ଗରେ ଏ କୀର୍ତ୍ତିମୁଖର ପୌରାଣିକ ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି । ଦୈତ୍ୟରାଜ ଜଳନ୍ଧର ମଦାନ୍ଧ ହୋଇ ରାହୁକୁ ଦୂତସ୍ୱରୂପ ଶିବଙ୍କ ନିକଟକୁ ପ୍ରେରଣ କରିଥିଲା; ପ୍ରସ୍ତାବ କରିଥିଲା ଯେ, ମହାଦେବ ଭିକ୍ଷୁକ, ସନ୍ନ୍ୟାସୀ, ପାର୍ବତୀ ତୁଲ୍ୟ ସୁନ୍ଦରୀ ରମଣୀ ଶିବଭୋଗ୍ୟା ନୁହନ୍ତି । ଶିବ ପାର୍ବତୀଙ୍କୁ ଶୀଘ୍ର ଜଳନ୍ଧରଙ୍କୁ ସମର୍ପଣ କରନ୍ତୁ । ରାହୁ ଏ ପ୍ରସ୍ତାବ ଘେନି ଶିବଙ୍କ ନିକଟରେ ଉପସ୍ଥିତ ହୋଇ ତାହା ପ୍ରକାଶ କଲା ମାତ୍ରକେ ଶିବ କ୍ରୋଧାନ୍ୱିତ ହୋଇ ଉଠିଲେ; କ୍ରୋଧ ହେତୁରୁ ଶିବଙ୍କ ଭ୍ରୂଯୁଗ୍ମ ମଧ୍ୟରୁ ସିଂହବଦନ, ଊର୍ଦ୍ଧ୍ୱକେଶ, ଲୋଲଜିହ୍ୱ, ଜ୍ୱଳନ୍ନୟନ, ଅତି କୃଶକାୟ ଏକ ଭୀଷଣ ମୂର୍ତ୍ତି ଅବିର୍ଭୂତ ହୋଇ ସିଂହଗର୍ଜନ କରିବାକୁ ଲାଗିଲା ଏବଂ ରାହୁକୁ ଧରି ଭକ୍ଷଣ କରିବାକୁ ଉଦ୍ୟତ ହେବାରୁ ରାହୁ ଶିବଙ୍କ ଶରଣାଗତ ହେଲା; ଦୂତ ଅବଧ—ତେଣୁ ଶିବ ରାହୁକୁ ରକ୍ଷା କଲେ; କିନ୍ତୁ ସେ ପୁରୁଷ କ୍ଷୁଧାର୍ତ୍ତ ହୋଇ ଶିବଙ୍କୁ ଭୋଜନ ମାଗିବାରୁ ଶିବ କହିଲେ, "ତୋର ନିଜର ହାତ ଗୋଡ଼

ଖାଇଯା;" ସେ ଆପଣାର ହାତ ଗୋଡ଼ ଖାଇଯିବାରୁ ତାହାର ମୁଖମାତ୍ର ଅବଶିଷ୍ଟ ରହିଲା । ଶିବ ତାହା ପ୍ରତି ସନ୍ତୁଷ୍ଟ ହୋଇ ଆଦେଶ ଦେଲେ, "ତୋହର ନାମ କୀର୍ତ୍ତିମୁଖ ରହିଲା; ତୁ ମୋର ମନ୍ଦିରର ଦ୍ୱାରଦେଶରେ ଅବସ୍ଥାନ କରିବୁ, ଯେଉଁମାନେ ପ୍ରଥମେ ତୋର ଅର୍ଚ୍ଚନା ନ କରି ମୋର ଅର୍ଚ୍ଚନା କରିବେ, ତୁମମାନଙ୍କ ପୂଜା ବିଫଳ ହେବ ।" ପ୍ରଥମେ କୀର୍ତ୍ତିମୁଖ ଶୈବମନ୍ଦିରଦ୍ୱାରରେ ସ୍ଥାପିତ ହେଉଥିଲା; ପରେ ଶୁଭସୂଚକ ଚିହ୍ନସ୍ୱରୂପ ଶିବ, ବିଷ୍ଣୁ, ଜୈନ ସମସ୍ତ ମନ୍ଦିରର ସମ୍ମୁଖସ୍ଥ ଦରଦୋଳି ଉପରେ ଖୋଦିତ ହୋଇଥିବାର ଦେଖାଯାଏ ।

ପାର୍ଶ୍ୱଦେବତା—ବଡ଼ଦେଉଳର ଉତ୍ତର, ଦକ୍ଷିଣ ଓ ପଶ୍ଚିମ ଦିଗରେ, ବିମାନର ମଧ୍ୟଦେଶରେ, ବିମାନଗାତ୍ରରେ ଯଥାକ୍ରମେ ପାର୍ବତୀ, ଗଣେଶ ଓ କାର୍ତ୍ତିକ ମୂର୍ତ୍ତି ସ୍ଥାପିତ ହୋଇଥିବାର ଆମ୍ଭେମାନେ ପୂର୍ବରୁ ଉଲ୍ଲେଖ କରିଅଛୁଁ । ଏ ତିନୋଟି ମୂର୍ତ୍ତି କାରୁକାର୍ଯ୍ୟ ବିଷୟରେ କେହି କାହାରିକୁ ଊଣା ନୁହେଁ ।

(କ) ପାର୍ବତୀ—ପାର୍ବତୀ ମୂର୍ତ୍ତି ଗୋଟିଏ ମନୁଷ୍ୟ ପରି ଉଚ୍ଚ, ଗୋଟିଏ ପ୍ରସ୍ଫୁଟିତ ପଦ୍ମପୀଠ ଉପରେ ଦଣ୍ଡାୟମାନା; ଏ ମୂର୍ତ୍ତିଟି ମୁଗୁନିପ୍ରସ୍ତରରେ ନିର୍ମିତ । ଏ ମୂର୍ତ୍ତିର ଚାରୋଟି ହାତ; କିନ୍ତୁ ସବୁଗୁଡ଼ିକ ଭଗ୍ନ ହୋଇଅଛି, କେବଳ ବାହୁଠାରୁ ରହିଅଛି; ଏହାର ବସନ, ଭୂଷଣ, ଶିରସ୍ତ୍ରାଣ, ପାଦପୀଠ ସମସ୍ତ ସୂଚୀନିର୍ମିତ କାରୁକାର୍ଯ୍ୟରେ ପୂର୍ଣ୍ଣ । ଏ ମୂର୍ତ୍ତିର ପରିହିତ ବସ୍ତ୍ରର କାରୁକାର୍ଯ୍ୟ ଏଡ଼େ ସୂକ୍ଷ୍ମ ଓ ସୁନ୍ଦର, ତାହା ଶିଳ୍ପକର କେତେ ଦିନରେ ସମାପନ କରିଥିବ, ତାହା ସହଜରେ କଳ୍ପନା ସୁଦ୍ଧା କରି ହେବ ନାହିଁ । ଏ ମୂର୍ତ୍ତିର କଣ୍ଠଦେଶରେ ଯେଉଁ କଣ୍ଠଭୂଷଣ ରହିଅଛି, ତାହା ମଧ୍ୟ ଅତି ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ । ଏହାର କେବଳ ବାମ ଗୋଡ଼ରେ ଗୋଟିଏ ସୁନ୍ଦର ଅଳଙ୍କାର ଅଛି । ଦକ୍ଷିଣ ଗୋଡ଼ରେ ସେପରି ଅଳଙ୍କାର ନାହିଁ । ଦେବୀଙ୍କର ପାଦଦେଶସ୍ଥ ପଦ୍ମପୁଷ୍ପର ନିମ୍ନରେ ସିଂହମୂର୍ତ୍ତି; ସିଂହ ଊର୍ଦ୍ଧ୍ୱମୁଖରେ ପ୍ରସନ୍ନବଦନରେ ଦେବୀଙ୍କ ଆଡ଼କୁ

ଅନାଇ ରହିଅଛି । ଦେବୀଙ୍କର ଉଭୟ ପାର୍ଶ୍ୱରେ ଅନେକଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ପାର୍ଶ୍ୱ ଦେବତା, ନର୍ତ୍ତକ ଓ ବାଦକର ମୂର୍ତ୍ତି; ଦେବୀଙ୍କର ପଶ୍ଚାତ୍ ଦିଗରେ ତ୍ରିକୋଣଭଙ୍ଗିବିଶିଷ୍ଟ ନାନାକାରୁକାର୍ଯ୍ୟପୂର୍ଣ୍ଣ ପ୍ରଭା ରହିଅଛି । ସେ ପ୍ରଭାର ଊର୍ଦ୍ଧ୍ୱ ଦେଶରେ ଦେବୀଙ୍କ ମସ୍ତକୋପରି କୀର୍ତ୍ତିମୁଖର ପ୍ରତିକୃତି । ସ୍ୱର୍ଗୀୟ ମନୋମୋହନ ଗଙ୍ଗୋପାଧ୍ୟାୟ ମହାଶୟ ଏ ମୂର୍ତ୍ତି ଦର୍ଶନ କରି ଯଥାର୍ଥରେ କହିଅଛନ୍ତି—"ଏ ମୂର୍ତ୍ତି ଦେଖି ଶିଳ୍ପସମାଲୋଚକର ମଧ୍ୟା ମନ ତରଳି ଯିବ ।" *

(ଖ) କାର୍ତ୍ତିକ—ବଡ଼ଦେଉଳର ବମାନର ପଶ୍ଚିମରେ କାର୍ତ୍ତିକ ମୂର୍ତ୍ତି; କାର୍ତ୍ତିକ ଦେବତାମାନଙ୍କ ମଧ୍ୟରେ ଅତ୍ୟନ୍ତ ସୁନ୍ଦର ବୋଲି ପୁରାଣାଦିରେ ବର୍ଣ୍ଣିତ ଅଛି; ଶିଳ୍ପକର ଏ ମୂର୍ତ୍ତିକୁ ଯଥାର୍ଥରେ ସୁନ୍ଦର କରିବାକୁ ଛାଡ଼ି ନାହିଁ । ପାର୍ବତୀ ମୂର୍ତ୍ତିର ବସନ ଭୂଷଣ ଆଦି ପରି ଏ ମୂର୍ତ୍ତିର ବସନ ଭୂଷଣାଦି ମଧ୍ୟ ଅତି ସୂକ୍ଷ୍ମ ଭାବରେ ଖୋଦିତ । ପାର୍ବତୀ ମୂର୍ତ୍ତିର ବାମ ଗୋଡ଼ରେ ଯେପରି ଅଳଙ୍କାର ଅଛି, ଏ ମୂର୍ତ୍ତିର କେବଳ ଦକ୍ଷିଣ ଗୋଡ଼ରେ ସେପରି ଅଳଙ୍କାର ରହିଅଛି । କାର୍ତ୍ତିକଙ୍କ ପାଦଦେଶର ଦକ୍ଷିଣପାର୍ଶ୍ୱରେ ଗୋଟିଏ ମୟୂର ଅଛି;ସେ ମୟୂରର ମସ୍ତକ ଭଗ୍ନ ହୋଇଅଛି । ମୟୂରପୁଚ୍ଛରେ ଚନ୍ଦ୍ରିକାମାନ ଖୋଦିତ ହୋଇ-ଅଛି । ଏ ମୂର୍ତ୍ତିର ପାର୍ଶ୍ୱରେ କେତେଗୁଡ଼ିଏ ପାର୍ଶ୍ୱଦେବତା ମଧ୍ୟ ବିଦ୍ୟମାନ । ଏହାର ପଶ୍ଚାତ୍ ଦିଗରେ ତ୍ରିଭଙ୍ଗବିଶିଷ୍ଟ ପ୍ରଭା ମଧ୍ୟ ରହିଅଛି । ଏ ପ୍ରଭା ମଧ୍ୟ

---

* The workmanship of the figure of Parvati is so nice that it never fails to exact the admiration of the most captious critics of art.

M. M. Ganguli's Orissa and her Remains, P 347.

ଭୁବନେଶ୍ୱର ।

ନାନା ପ୍ରକାର କାରୁକାର୍ଯ୍ୟଖୋଦିତ । ଏହାର ଊର୍ଦ୍ଧ୍ୱ ଦେଶରେ କୀର୍ତ୍ତିମୁଖ; କୀର୍ତ୍ତିମୁଖର ଉଭୟ ପାର୍ଶ୍ୱରେ ଦୁଇଟି ପଦ୍ମମୂର୍ତ୍ତି; କୀର୍ତ୍ତିମୁଖର ମୁଖରୁ ମାଳା ଲମ୍ବିତ ।

କାର୍ତ୍ତିକେୟ ପୂଜା ଭାରତବର୍ଷରେ ବହୁକାଳରୁ ପ୍ରଚଳିତ । କାର୍ତ୍ତିକେୟଙ୍କର ଅନ୍ୟ ନାମ ସ୍କନ୍ଦ; ସ୍କନ୍ଦ-ଉପାସକଗଣ କୌମାର ନାମରେ ପରିଚିତ । କାର୍ତ୍ତିକ ମୂର୍ତ୍ତି ସ୍ଥଳବିଶେଷରେ ଦ୍ୱିଭୁଜ, ଚତୁର୍ଭୁଜ ଓ ଷଡ଼୍‌ଭୁଜ ହୋଇଥାଏ । ଉଲ୍ଲିଖିତ କାର୍ତ୍ତିକ ଦ୍ୱିଭୁଜ । ଉଭୟ ଭୁଜ ଭଗ୍ନ ।

(ଗ) ଗଣେଶ—ବଡ଼ଦେଉଳର ବିମାନର ଦକ୍ଷିଣ ପାର୍ଶ୍ୱରେ ଗଣେଶ ମୂର୍ତ୍ତି; ଏମୂର୍ତ୍ତି ଅତି ପ୍ରକାଣ୍ଡ । ମୂର୍ତ୍ତିର ଉଚ୍ଚତା ଓ ପ୍ରକାଣ୍ଡତା ତୁଳନାରେ 'ଥଁତଲପେଟ'ଟି ମଧ୍ୟ କମ୍ ପ୍ରକାଣ୍ଡ ନୁହେ । ପାଦଦେଶସ୍ଥ ମୂଷାଟି ମଧ୍ୟ ସେହିପରି ପାହାଡ଼ିଆ ମୂଷା; କିନ୍ତୁ ତାହା ଠିକ୍ ମୂଷା ପରି ଦିଶୁ ନାହିଁ, ଅସ୍ୱାଭାବିକ ହୋଇ ଯାଇଅଛି । ଏ ମୂର୍ତ୍ତିର ପାଦଦେଶରେ ପଦ୍ମପୀଠ । ଏହାର ପରିହିତ ବସନରେ ଆଣ୍ଠୁ ଲୁଚି ନାହିଁ; କିନ୍ତୁ ବସନର ଖୋଦିତ କାରୁକାର୍ଯ୍ୟ ଅତି ସୂକ୍ଷ୍ମ ଓ ସୁନ୍ଦର । କଟୀରେ ମଧ୍ୟ କଟୀଭୂଷଣ, ଅତିସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ । ଏ ମୂର୍ତ୍ତିର ଚାରୋଟି ହସ୍ତ; ଦକ୍ଷିଣ ପାର୍ଶ୍ୱର ନିମ୍ନ ହସ୍ତରେ ଅକ୍ଷମାଳା, ଊର୍ଦ୍ଧ୍ୱ ହସ୍ତରେ ଗଜଦନ୍ତ; ବାମପାର୍ଶ୍ୱର ଊର୍ଦ୍ଧ୍ୱ ହସ୍ତରେ ଲଡ଼ୁପାତ୍ର, ନିମ୍ନହସ୍ତରେ ଗଦା; ପେଟରେ ସର୍ପ, ସ୍କନ୍ଧରେ ପଇତା । ଏହାର ପାର୍ଶ୍ୱରେ ପାର୍ଶ୍ୱଦେବତାମାନ ମଧ୍ୟ ରହିଅଛନ୍ତି । ଏହାର ପଶ୍ଚାତରେ ଗୋଟିଏ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ପ୍ରଭା; ଗଣେଶଙ୍କ ମସ୍ତକର ଶିରସ୍ତ୍ରାଣର କାରୁକାର୍ଯ୍ୟ ମଧ୍ୟ ଅତି ସୁନ୍ଦର ।

ଗଣପତି ପୂଜା ଭାରତ ଭିନ୍ନ ଅନ୍ୟତ୍ର ମଧ୍ୟ ପ୍ରଚଳିତ । ଗ୍ରାଉନ୍‌ୱେଡ଼େଲ ସାହେବ ତାଙ୍କର 'ଭାରତରେ ବୌଦ୍ଧଶିଳ୍ପ' ଗ୍ରନ୍ଥରେ ଲେଖିଅଛନ୍ତି— "ବିନାୟକ ବା ଗଣେଶ ଜାପାନରେ ବୁଦ୍ଧା ଦେବତା ବୋଲି ପୂଜିତ । ଅଶୋକଙ୍କ କନ୍ୟା ଚାରୁମତୀ ନେପାଳରେ ଗଣେଶମନ୍ଦିର ପ୍ରତିଷ୍ଠା

କରିଥିଲେ ।" * ପ୍ରାଚୀନ କାଳରେ ମଗଧରେ ବୌଦ୍ଧମନ୍ଦିରମାନଙ୍କରେ ଗଣେଶପୂଜା ହେଉଥିଲା । † ପୁରାଣ ଓ ତନ୍ତ୍ରାଦିରେ ୫୪ ପ୍ରକାର ଭିନ୍ନ ଗଣେଶ ମୂର୍ତ୍ତିର ଆରାଧନା ପ୍ରସଙ୍ଗ ଲିଖିତ ଅଛି ।

ଉଲ୍ଲିଖିତ ପାର୍ବତୀ, କାର୍ତ୍ତିକ ଓ ଗଣେଶଙ୍କର ଦୈନିକ ପୂଜା ଆଦି ହୁଏ ନାହିଁ; କେବଳ ସେବକମାନେ ଟିକିଏ ଜଳ ଓ ଚନ୍ଦନ ଦେଇ ଆସନ୍ତି । ଭୁବନେଶ୍ୱରର ସେବକମାନଙ୍କ ମଧ୍ୟରେ ଯେପରି ପରସ୍ପରର ପ୍ରତିଷ୍ଠା ଲାଗି ବିବାଦ (Civil war), ସେଥିରେ ଆମ୍ଭମାନଙ୍କର ମନେ ହୁଏ, ଗଣେଶାଦି ପାର୍ଶ୍ୱଦେବତା ତ ଦୂରର କଥା, ଦିନେ ସ୍ୱୟଂ ଲିଙ୍ଗରାଜଙ୍କ ପୂଜା ମଧ୍ୟ ବନ୍ଦ ହୋଇଯିବ; ଯଥାର୍ଥରେ ବଡ଼ଠାକୁରଙ୍କର ପୂଜା ମଧ୍ୟ ବନ୍ଦ ହୋଇଥିଲା । ଭୁବନେଶ୍ୱରର ସୁବ୍ୟବସ୍ଥା ନ ହେଲେ ଏ କୀର୍ତ୍ତି ଦିନକୁ ଦିନ ଲୋପ ପାଇବ ।

ଦିଗ୍‌ପତି—ଦିକ୍‌ପତିପ୍ରସଙ୍ଗ ଆମ୍ଭେମାନେ ଏଥି ପୂର୍ବରୁ ଆଲୋଚନା କରିଅଛୁଁ । ଲିଙ୍ଗରାଜମନ୍ଦିରର ବିମାନଗାତ୍ରସ୍ଥ ଦିକ୍‌ପତି ମଧ୍ୟରୁ ଇନ୍ଦ୍ରମୂର୍ତ୍ତି ଭଗ୍ନ ହୋଇ ଯାଇଅଛି । ଐରାବତ ଆଂଶିକ ରହିଅଛି । ଦକ୍ଷିଣ ଦିଗରେ ଯମ; ତାଙ୍କର ମହିଷ ବାହନ; ମହିଷଟି ଠିକ ମହିଷ ପରି ହୋଇ ନାହିଁ । ପଦ୍ମପୁଷ୍ପୋପରି ନୈଋତ ଦିଗରେ ନୈଋତ ମୂର୍ତ୍ତି; ଏହା ମନୁଷ୍ୟାକୃତି । ପଶ୍ଚିମ ଦିଗର ଉତ୍ତର ଆଡ଼କୁ ମକରବାହନରେ ବରୁଣ ମୂର୍ତ୍ତି, ଏହାର ଉଭୟ ପାର୍ଶ୍ୱରେ ପୁଷ୍ପଲତାଦି ଖୋଦିତ । ଉତ୍ତର-ପଶ୍ଚିମ କୋଣରେ ପବନଦେବତା, ହରିଣବାହନରେ ଅବସ୍ଥିତ; ଏହାର ପାର୍ଶ୍ୱଦେଶରେ ବାନର, ହସ୍ତୀ ଓ ହରିଣ ମୂର୍ତ୍ତି, ଉତ୍ତର ଦିଗରେ କୁବେର, ଐଶାନ୍ୟ କୋଣରେ ଈଶାନ; ଏହାଙ୍କ ବାହନ ବୃଷଭ ।

ଭୁବନେଶ୍ୱରଠାରେ ଦୁଇଜଣ ଶିଳ୍ପୀଙ୍କଠାରୁ ଆମ୍ଭେମାନେ ଦୁଇଖଣ୍ଡ ପ୍ରାଚୀନ ଶିଳ୍ପ ପୋଥି ପାଇଅଛୁଁ, ସେଥି ମଧ୍ୟରୁ ଖଣ୍ଡିକର ଶେଷାଂଶରେ

---

* Buddhist Art in India P. 83.

† Oldfield's Nepal Vol. II P. 98.

ଭୁବନେଶ୍ୱର ।

ଦିକ୍‌ପତିମାନଙ୍କର ଆକାର ଓ ବାହନ ଆଦିର ଚିତ୍ର ପ୍ରଦର୍ଶିତ ହୋଇଅଛି । ଉଲ୍ଲିଖିତ ଦିକ୍‌ପତି ମୂର୍ତ୍ତିମାନ ସେହି ଚିତ୍ରର ଅନୁରୂପ ! †

ବିମାନଗାତ୍ରରେ ଅନ୍ୟାନ୍ୟ ମୂର୍ତ୍ତି ଓ ଜୀବଜନ୍ତୁ ପ୍ରତିମୂର୍ତ୍ତି ମଧ୍ୟରେ ଗଜ-ସିଂହ, ଜଡ଼ାସିଂହ, ଗଜବିଡ଼ାଳ, ହସ୍ତୀ, ମର୍କଟ, ଅଶ୍ୱ ଆଦି ମୂର୍ତ୍ତି ଉଲ୍ଲେଖ-ଯୋଗ୍ୟ । ସେସବୁ ନିର୍ମାଣ କରିବାରେ ଶିଳ୍ପିମାନେ ଯଥେଷ୍ଟ ପାରଦର୍ଶିତା ପ୍ରଦର୍ଶନ କରିଅଛନ୍ତି ।

ଲକ୍ଷ୍ମୀନୃସିଂହ—ଲିଙ୍ଗରାଜ ମନ୍ଦିରର ପ୍ରାଙ୍ଗଣ ମଧ୍ୟସ୍ଥ ଅନ୍ୟାନ୍ୟ ମନ୍ଦିର ମଧ୍ୟରୁ ଲକ୍ଷ୍ମୀନୃସିଂହ ମନ୍ଦିରରେ ଲକ୍ଷ୍ମୀନୃସିଂହ ମୂର୍ତ୍ତି ଦର୍ଶନୀୟ । ନୃସିଂହ ମୂର୍ତ୍ତି ଉଗ୍ରମୂର୍ତ୍ତି ନୁହେଁ; ଏ ମୂର୍ତ୍ତି ମୁଗୁନିପ୍ରସ୍ତରରେ ନିର୍ମିତ; ଏହାର ଅଙ୍ଗସୌଷ୍ଠବ ଓ କାରୁକାର୍ଯ୍ୟ ଅତି ସୁନ୍ଦର; ନୃସିଂହ ପଦ୍ମାସନରେ ଉପବିଷ୍ଟ; ନୃସିଂହଙ୍କ କୋଡ଼ରେ ଲକ୍ଷ୍ମୀଙ୍କର ଭଗ୍ନମୂର୍ତ୍ତି ସ୍ଥାପିତ । ଏ ମୂର୍ତ୍ତି ଚତୁର୍ଭୁଜ; ଊର୍ଦ୍ଧ୍ୱ ହସ୍ତଦ୍ୱୟରେ ଶଙ୍ଖ ଚକ୍ର; ନିମ୍ନ ହସ୍ତଦ୍ୱୟ ତଳକୁ ଲମ୍ବିତ; ସେ ହସ୍ତଦ୍ୱୟରେ ପଦ୍ମଚିହ୍ନ ରହିଅଛି । ଏ ମୂର୍ତ୍ତି ପଶ୍ଚିମ ଦିଗକୁ ମୁଖ କରି ବସିଅଛନ୍ତି ।

## ଅନନ୍ତ ବାସୁଦେବ ମନ୍ଦିର ।

'ସ୍ୱର୍ଣ୍ଣାଦ୍ରିମହୋଦୟ'ବର୍ଣ୍ଣିତ ଲିଙ୍ଗରାଜଦର୍ଶନବିଧି ଅନୁସାରେ ପ୍ରଥମେ ତୀର୍ଥଯାତ୍ରୀଙ୍କୁ ଅନନ୍ତ ବାସୁଦେବ ଦର୍ଶନ କରି ତଦନନ୍ତର ଲିଙ୍ଗରାଜ

---

† ଉତ୍କଳସାହିତ୍ୟସମାଜର ବ୍ୟୟରେ ସେ ପୋଥି ମଧ୍ୟରୁ ଉତ୍କୃଷ୍ଟ ଖଣ୍ଡିକ ନକଲ କରି ରଖା ଯାଇଅଛି । ଚିତ୍ରଗୁଡ଼ିକ ମଧ୍ୟ ନକଲ କରା ଯାଇଅଛି । କୌଣସି ଧନୀ ବ୍ୟକ୍ତି ବା ଉତ୍କଳ ସାହିତ୍ୟସମାଜ ତାହା ଚିତ୍ରଗୁଡ଼ିକ ସହିତ ମୁଦ୍ରଣ କଲେ ସାହିତ୍ୟର ଅଙ୍ଗସୌଷ୍ଠବ ହୁଅନ୍ତା ।

ମନ୍ଦିରକୁ ଯିବାକୁ ହୁଏ । ✻ କପିଳସଂହିତାବର୍ଣ୍ଣିତ ବିବରଣ ଅନୁସାରେ ଶିବଙ୍କର ଏକାମ୍ର ଆଗମନ ପୂର୍ବରୁ ଅନନ୍ତ ଏକାମ୍ର ବନରେ ଅବସ୍ଥାନ କରୁଥିଲେ । କପିଳସଂହିତାବର୍ଣ୍ଣିତ ବିବରଣ ଅନୁସାରେ ବିଷ୍ଣୁ ଶିବଙ୍କୁ ଏକାମ୍ର ବନରେ ବାସ କରିବାକୁ ଅନୁମତି ପ୍ରଦାନ କରିଥିଲେ । ଏ ପ୍ରସଙ୍ଗ ଆମ୍ଭେମାନେ ଯଥାସ୍ଥାନରେ ଲିପିବଦ୍ଧ କରିଅଛୁଁ । ସେହି କାରଣରୁ ଲିଙ୍ଗରାଜଙ୍କ ପୂଜା ପୂର୍ବରୁ ଅନନ୍ତ ବାସୁଦେବଙ୍କ ପୂଜା କରିବା ବିଧି; ଅର୍ଥାତ୍ ଅନନ୍ତ ବାସୁଦେବଙ୍କ ଅନୁମତି ଗ୍ରହଣ କରି ଲିଙ୍ଗରାଜଙ୍କ ପୂଜା କରିବାକୁ ଯିବା ବିହିତ ।

---

✻ ସ୍ନାତ୍ୱା ବିନ୍ଦୁହ୍ରଦେ ତସ୍ୟାଂ ଶିବସୂକ୍ତଂ ସଦା ଜପନ୍ ।
ପଞ୍ଚଧାମତ ମୁକ୍ତାତ୍ମା ମେରୌ ସୂର୍ଯ୍ୟ ଇବାପରଃ ॥
ଜନ୍ମାର୍ଜିତଂ ଚ ଯତ୍ ପାପଂ କ୍ଷାଳୟେତ୍ତନ୍ମହତ୍ତରଂ ।
ଏକାମ୍ରକସ୍ୟ ବୃକ୍ଷାଧ ଉଷିତ୍ୱା କାରକୋଦ୍ୱିଜଃ ॥
ସଂକଳ୍ପକଂ ତତଃ କୃତ୍ୱା ନାମଗୋତ୍ରବିଧାନତଃ ।
ଏକାମ୍ରେଶଂ ନମସ୍କୃତ୍ୟ ଗତ୍ୱା ଚ ସରସସ୍ତଟଂ ॥
ପୁନଃ ସ୍ନାତ୍ୱା ପ୍ରଯତ୍ନେନ ଦର୍ଶନଂ ଚ ସମାଚରେତ୍ ।
ଅନନ୍ତବାସୁଦେବଂ ଚ ଦେବଂ ପାଦହ୍ୱୟଂ ଦ୍ୱିଜାଃ ॥
ଘଟେଶ୍ୱରଂ ଦଦର୍ଶାଥ ସିଦ୍ଧଦ୍ୱାରଂ ବିଶେଷତଃ ।
ଅଷ୍ଟମୂର୍ତ୍ତିକ୍ରମେଣୈବ ଦର୍ଶନଂ ଚ ସମାଚରେତ୍ ॥
ତତଃ ପ୍ରଦକ୍ଷିଣଂ କୃତ୍ୱା ବ୍ରଜେତ୍ ବୈ କୁଣ୍ଡଳେଶ୍ୱରଂ ।
ସମ୍ପୂଜ୍ୟାଥ ଦ୍ୱିଜଶ୍ରେଷ୍ଠା ବହ୍ନିରଙ୍ଗେଶ୍ୱରଂ ବ୍ରଜେତ୍ ॥
ଯାମ୍ୟାଂ ଦିଶଂ ସମାରଭ୍ୟ ସ୍ୱର୍ଣ୍ଣାଚଳମଥୋ ବ୍ରଜେତ୍ ।
ବଳହାଂ ଚ ତତୋ ଦେବଂ ଭକ୍ତ୍ୟା ପଶ୍ୟେଦ୍ଦ୍ୱିଜୋତ୍ତମାଃ ॥
କୁଣ୍ଡଳେଶ୍ୱରମାସାଦ୍ୟ ଭକ୍ତ୍ୟା ତଂ ନ ପ୍ରପୂଜୟେତ୍ ।
ଭୁବନେଶଂ ତତୋ ଗତ୍ୱା ପ୍ରପଶ୍ୟେଦ୍ ଭକ୍ତିସଂଯୁତଃ ॥

ସ୍ୱର୍ଣ୍ଣାଦ୍ରି ମହୋଦୟ, ୬୭ ପୃଷ୍ଠା ।

## ଅନନ୍ତ ବାସୁଦେବ ମନ୍ଦିରର ନିର୍ମାଣକାଳ ।

ଅନନ୍ତ ବାସୁଦେବ ମନ୍ଦିରର ପ୍ରାଙ୍ଗଣର ପଶ୍ଚିମପାର୍ଶ୍ୱସ୍ଥ ପ୍ରାଚୀରରେ ଯେଉଁ ଶିଳାଲିପି ଦୁଇଖଣ୍ଡି ଅଛି, ସେଥି ମଧ୍ୟରୁ ଖଣ୍ଡିଏ ବାଚସ୍ପତି ମିଶ୍ର ରଚିତ ଭବଦେବ ଭଟ୍ଟଙ୍କ ପ୍ରଶସ୍ତି । ଆଜିପର୍ଯ୍ୟନ୍ତ ଯେତେ ବଙ୍ଗୀୟ ଲେଖକ ଭୁବନେଶ୍ୱର ପ୍ରସଙ୍ଗ ଆଲୋଚନା କରିଅଛନ୍ତି, ସମସ୍ତେ ଭବଦେବ ଭଟ୍ଟଙ୍କର ଏ ପ୍ରଶସ୍ତି ଦେଖି ଭବଦେବ ଭଟ୍ଟଙ୍କୁ ଏ ମନ୍ଦିରର ନିର୍ମାତା ବୋଲି ସାବ୍ୟସ୍ତ କରିଅଛନ୍ତି । ଏହା କେବଳ ବଙ୍ଗୀୟ ଲେଖକମାନଙ୍କ ଜାତୀୟ ପକ୍ଷପାତର ଫଳ; ଭବଦେବ ଭଟ୍ଟଙ୍କର ଯଥାର୍ଥ ପରିଚୟ ଏପର୍ଯ୍ୟନ୍ତ ସୁକ୍ଷ୍ମଭାବରେ ଜଣା ପଡି ନାହିଁ; କିନ୍ତୁ କେଉଁଠି କୌଣସି ବଙ୍ଗୀୟ ଲେଖକ ତାଙ୍କର ବଂଶାବଳୀ ସୁଦ୍ଧା ନିର୍ଣ୍ଣୟ କରି ସାରିଅଛନ୍ତି । ସେମାନଙ୍କ ମତରେ ହରିବର୍ମ ଦେବଙ୍କ ରାଜସଭାରେ ଭବଦେବ ଭଟ୍ଟ ରାଜମନ୍ତ୍ରୀ ଥିଲେ । ଭବଦେବ ଭଟ୍ଟ ବଙ୍ଗଦେଶବାସୀ ହୋଇନ୍ତୁ, ବାଚସ୍ପତି ମିଶ୍ର ତାଙ୍କର ପ୍ରଶସ୍ତି ଲେଖନ୍ତୁ, ସେ ହରିବର୍ମ ଦେବଙ୍କ ସଭାରେ ମନ୍ତ୍ରିତ୍ୱ କରନ୍ତୁ, ବଙ୍ଗୀୟ ଲେଖକମାନେ ତାଙ୍କର କୋଷ୍ଠି, ବଂଶାବଳୀର ଯଥେଷ୍ଟ ଆଲୋଚନା କରନ୍ତୁ; କିନ୍ତୁ ସେ ଯେ ଅନନ୍ତ ବାସୁଦେବ ମନ୍ଦିରର ନିର୍ମାତା ନ ଥିଲେ, ତାହା ନିଃସନ୍ଦେହରୂପେ ବୋଲିଯାଇ ପାରେ । ବଙ୍ଗୀୟ ଲେଖକମାନେ ଭବଦେବ ଭଟ୍ଟଙ୍କୁ ଅନନ୍ତ ବାସୁଦେବ ମନ୍ଦିରର ନିର୍ମାତା ବୋଲି ସିଦ୍ଧାନ୍ତ କରିବା ଉଦ୍ଦେଶ୍ୟରେ ଲିଙ୍ଗରାଜ ମନ୍ଦିରର ବହୁ ଶତାବ୍ଦୀ ପରେ ଅନନ୍ତ ବାସୁଦେବ ମନ୍ଦିର ନିର୍ମିତ ଓ ତାହାର ଆକାର ପ୍ରକାରରୁ ତାହା ଲିଙ୍ଗରାଜ ମନ୍ଦିର ଅପେକ୍ଷା ଅପ୍ରାଚୀନ ବୋଲି ମତ ବ୍ୟକ୍ତ କରିବାକୁ ଛାଡ଼ି ନାହାନ୍ତି; କିନ୍ତୁ ଯଥାର୍ଥରେ ନିରପେକ୍ଷ ଚକ୍ଷୁରେ ଅନନ୍ତ ବାସୁଦେବ ମନ୍ଦିର ଦେଖିଲେ ବଙ୍ଗୀୟ ଲେଖକମାନଙ୍କ ଯୁକ୍ତିର ଅସାରତା ପ୍ରତିପାଦିତ ହେବ । ଆମ୍ଭେମାନେ ଅନନ୍ତ ବାସୁଦେବ ମନ୍ଦିର ଦେଖି ଅନୁମାନ କରୁଅଛୁଁ, ତାହା ଲିଙ୍ଗରାଜ ମନ୍ଦିର ନିର୍ମାଣର କିଞ୍ଚିତ୍ ପୂର୍ବେ ବା ଏକ ସମୟରେ ନିର୍ମିତ; ଅନନ୍ତ ବାସୁଦେବ ମନ୍ଦିର ଲିଙ୍ଗରାଜ ମନ୍ଦିରର ବହୁ ଶତାବ୍ଦୀ ପରେ ନିର୍ମିତ ହୋଇଥିଲେ ତାହା ଭଗ୍ନଦଶାପନ୍ନ ବା ମନ୍ଦିରପ୍ରାଙ୍ଗଣସ୍ଥ ଗୋଟିଏ

ମନ୍ଦିର ଭୂମିସାତ୍ ହୋଇ ଯାଇ ନ ଥାନ୍ତା । ମନ୍ଦିର ପ୍ରାଙ୍ଗଣସ୍ଥ ଅନ୍ୟ କ୍ଷୁଦ୍ର ମନ୍ଦିର ତିନୋଟି ମଧ୍ୟ ଭଗ୍ନଦଶାପ୍ରାପ୍ତ । ଏ ମନ୍ଦିରର ଭଗ୍ନାବସ୍ଥା ଏହାର ପ୍ରାଚୀନତାର ଯଥେଷ୍ଟ ପରିଚାୟକ ।

ଯେଉଁ ବଙ୍ଗୀୟ ଲେଖକମାନେ ଭବଦେବ ଭଟ୍ଟଙ୍କୁ ଅନନ୍ତ ବାସୁଦେବ-ମନ୍ଦିରର ସ୍ଥାପୟିତା ବୋଲି ପ୍ରମାଣ କରିବାରେ ବ୍ୟସ୍ତ, ଯେଉଁମାନେ ବହୁ-ଆଡ଼ମ୍ବରପୂର୍ଣ୍ଣ ଯୁକ୍ତିଦ୍ୱାରା ଭବଦେବ ଭଟ୍ଟଙ୍କୁ ପୂର୍ବବଙ୍ଗୀୟ ବ୍ରାହ୍ମଣ ଓ ଅନନ୍ତ ବାସୁଦେବମନ୍ଦିର ନିର୍ମାଣ କାଳରେ ହରିବର୍ମ ଦେବଙ୍କ ମନ୍ତ୍ରୀ ଥିବାର ସାବ୍ୟସ୍ତ କରିବାରେ ବ୍ୟସ୍ତ, ସେମାନଙ୍କ ମଧ୍ୟରୁ କେହି କେହି ଅନନ୍ତ ବାସୁଦେବମନ୍ଦିରକୁ ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର ଅପେକ୍ଷା ପ୍ରାଚୀନ ଓ କେହି କେହି ତଦପେକ୍ଷା ଅପ୍ରାଚୀନ ବୋଲି ଉଲ୍ଲେଖ କରିଅଛନ୍ତି । ସେମାନଙ୍କ ମଧ୍ୟରୁ କେହି କେହି ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର ଖ୍ରୀଷ୍ଟାୟ ନବମ ଶତାବ୍ଦୀରେ ନିର୍ମିତ ବୋଲି ନିର୍ଣ୍ଣୟ କରନ୍ତି ଓ ଭବଦେବ ଭଟ୍ଟଙ୍କୁ ଏକାଦଶ ଶତାବ୍ଦୀର ଲୋକ ବୋଲି ନିରୂପଣ କରନ୍ତି । ସେମାନେ କପିଳସଂହିତା, ଏକାମ୍ରପୁରାଣ ପ୍ରଭୃତିରେ ବର୍ଣ୍ଣିତ ଶିବ ବସ୍ତୁ ଉପାଖ୍ୟାନକୁ ଉଡ଼ାଇଦେବା ଲାଗି କହନ୍ତି—"ପୌରାଣିକ ବୃତ୍ତାନ୍ତରୁ ଇତିହାସ ସଗ୍ରହ ଅସମ୍ଭବ ।"

କଟକ ଜିଲ୍ଲାର 'ଖଣ୍ଡି' ପ୍ରଗନାରେ ସିଦ୍ଧଳ ବୋଲି ଗୋଟିଏ ଗ୍ରାମ ଅଛି; ସେଠାରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ତିନି ମୂର୍ତ୍ତି ବିରାଜିତ ଅଛନ୍ତି, ଏମାନଙ୍କ ଲାଗି ଗୋଟିଏ ଦେଉଳ ମଧ୍ୟ ନିର୍ମିତ ହୋଇଥିଲା; ସେହି ଦେଉଳ ନିକଟରେ ଗୋଟିଏ ସୁବୃହତ୍ ପୁଷ୍କରିଣୀ ମଧ୍ୟ ଅଛି; ପୁଷ୍କରିଣୀଟି ଦେଖିଲେ ପ୍ରାଚୀନ ବୋଲି ବୋଧ ହୁଏ । ସିଦ୍ଧଳ ନିକଟବର୍ତ୍ତୀ ଟହଣୀ ନାମକ ଗ୍ରାମରେ ସେହି ଜଗନ୍ନାଥଙ୍କର ଗୁଣ୍ଡିଚାଘର ଅଛି । ପ୍ରତି ବର୍ଷ ରଥଯାତ୍ରା ସମୟରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ସେଠାକୁ ଶୋଭାଯାତ୍ରା କରି ବିଜେ କରନ୍ତି । ଭବଦେବ ଭଟ୍ଟଙ୍କ ପ୍ରଶସ୍ତିରେ ( ବାଚସ୍ପତି ମିଶ୍ର ରଚିତ ) 'ସିଦ୍ଧଳ' ଗ୍ରାମ ବୋଲି ଲିଖିତ ହୋଇଥିଲେହେଁ ତାହା କେଉଁଠାରେ ଅବସ୍ଥିତ, ତାହାର

କୌଣସି ନିଦର୍ଶନ ନାହିଁ । ଆମ୍ଭେମାନେ ମନେ କରୁଁ, ଭବଦେବ ଭଟ୍ଟ ଏହି ସିଦ୍ଧଳ ଗ୍ରାମବାସୀ ଥିଲେ; ସ୍ୱଗ୍ରାମରେ ସେ ଜଗନ୍ନାଥମନ୍ଦିର ନିର୍ମାଣ ଓ ତନ୍ନିକଟରେ ପ୍ରଶସ୍ତିବର୍ଣ୍ଣିତ ପୁଷ୍କରିଣୀ ଖନନ କରାଇଥିଲେ; ସେ ପରେ ହରିବର୍ମ ଦେବଙ୍କର ସଭାସଦ୍ ମନ୍ତ୍ରୀ ନିଯୁକ୍ତ ହୋଇଥିଲେ । ନଚେତ୍ ସୁଦୂର ବଙ୍ଗଦେଶରୁ ସେ ସମୟରେ ଆଗମନ କରି ଓଡ଼ିଶାରେ ଅନନ୍ତ ବାସୁଦେବମନ୍ଦିର ପ୍ରତିଷ୍ଠା କରିବାର ତାଙ୍କର କୌଣସି କାରଣ ନ ଥିଲା । ବାଚସ୍ପତି ମିଶ୍ରଙ୍କ କର୍ତ୍ତୃକ ଲିଖିତ ପ୍ରଶସ୍ତିରେ ତାହାର ରଚନାର ସମୟ ଲିଖିତ ହୋଇ ନାହିଁ; କିନ୍ତୁ ପ୍ରଶସ୍ତିଟି ନିଶ୍ଚୟ ଭବଦେବଙ୍କ ସମୟର ପରବର୍ତ୍ତୀ ରଚନା । ଭବଦେବଙ୍କ ପ୍ରଶସ୍ତି ପ୍ରଚାର ବାଚସ୍ପତିଙ୍କ ଉଦ୍ଦେଶ୍ୟ ବୋଲି ସେଥିରୁ ସ୍ପଷ୍ଟ ଅନୁମିତ ହୁଏ । ସୁତରାଂ ହୁଏ ତ ଭବଦେବଙ୍କ ପ୍ରଶସ୍ତି ପ୍ରକାଶ୍ୟ ସ୍ଥାନରେ ସ୍ଥାପନ କରିବା ଉଦ୍ଦେଶ୍ୟରେ ବାଚସ୍ପତି ଅନନ୍ତ ବାସୁଦେବମନ୍ଦିରର ପ୍ରାଚୀର ଗାତ୍ରରେ ଏ ଶିଳାଲିପି ସ୍ଥାପନ କରିଥିବେ; କିମ୍ବା ଭବଦେବ ବିଷ୍ଣୁମନ୍ଦିର ସ୍ଥାପନ ଓ ତନ୍ନିକଟବର୍ତ୍ତୀ ପୁଷ୍କରିଣୀ ଖନନ କରାଇଥିଲେ, ତେଣୁ ଖଣ୍ଡିଗିରିପ୍ରାନ୍ତର ସନ୍ନିକଟରେ ଯଥାର୍ଥ ମନ୍ଦିର ଓ ପୁଷ୍କରିଣୀ ନ ଦେଖି, ଏହି ଅନନ୍ତ ବାସୁଦେବ-ମନ୍ଦିରକୁ ଭବଦେବଙ୍କ କାର୍ତ୍ତି ଅନୁମାନ କରି ଏହିଠାରେ ପ୍ରଶସ୍ତିଟି ସ୍ଥାପନ କରିଥିବେ । ନଚେତ୍ ଭବଦେବ ଏ ଅନନ୍ତ ବାସୁଦେବମନ୍ଦିରର ପ୍ରତିଷ୍ଠାତା ହୋଇଥିଲେ ମନ୍ଦିର ଗାତ୍ରରେ ପ୍ରଶସ୍ତିଟି ସ୍ଥାପନ ନ କରି ପ୍ରାଚୀର ଗାତ୍ରରେ ସ୍ଥାପନ କରିଥାନ୍ତେ କାହିଁକି ? ଡାକ୍ତର ରାଜେନ୍ଦ୍ରଲାଲ ଏ ବିଷୟରେ ପୂର୍ବରୁ ସତର୍କତା ଅବଲମ୍ବନ କରି କହିଅଛନ୍ତି—"ଯଥାର୍ଥରେ ମନ୍ଦିର ଗାତ୍ରରେ ଲିପିଟି ସ୍ଥାପିତ ହୋଇଥିଲା, ଜେନେରେଲ ଷ୍ଟୁଆର୍ଟ୍ ଏହାକୁ ମନ୍ଦିର ଗାତ୍ରରୁ ନେଇ ଯାଇ ବଙ୍ଗୀୟ ଏସିଆଟିକ ସୋସାଇଟିର ମିଉଜିୟମରେ (Meusium of the Bengal Asiatic Society) ସ୍ଥାପନ କରି-ଥିଲେ; ପରେ ମେଜର କିଟୋ ତାହାକୁ ଆଣି ପ୍ରାଚୀର ଗାତ୍ରରେ ସ୍ଥାପନ କରିଅଛନ୍ତି । କିନ୍ତୁ ମନ୍ଦିରର ଅନ୍ୟ କୌଣସି ସ୍ଥାନରୁ ଲିପିଟି କଢ଼ାଯାଇ ନିଆଯାଇଥିବାର ଚିହ୍ନ ସୂଚା ନାହିଁ; ବୟୋବୃଦ୍ଧ ପଣ୍ଡାମାନଙ୍କଠାରୁ ଶୁଣିଲୁଁ, ଏ




ଅନନ୍ତବାସୁଦେବ ମନ୍ଦିରର ନକ୍ସା ।

(୧) ବିମାନ, (୨) ଜଗମୋହନ, (୩) ନାଟମନ୍ଦିର,
(୪) ଭୋଗମଣ୍ଡପ, (୫) ରନ୍ଧନଶାଳା ।

ଲିପି ଯେଉଁଠାରେ ଥିଲା, ପରେ ସେହିଠାରେ ଆଣି ରଖି ଦିଆ ଯାଇଅଛି । ସୁତରାଂ ଡ଼ାକ୍ତର ରାଜେନ୍ଦ୍ରଲାଲଙ୍କର ଏ ଅନୁମାନ ଭିତ୍ତିହୀନ ।

ଆଜକାଲି ଧନୀମାନେ ବିଦେଶରୁ ଆଗମନ କରି ପ୍ରସ୍ତରରେ ସ୍ୱୀୟ ବଂଶ-ପରିଚୟ ଆଦି ଲେଖି ପୁରୀ ଓ ଭୁବନେଶ୍ୱର ମନ୍ଦିରରେ ସ୍ଥାପନ କରୁଅଛନ୍ତି; ପରେ ସେ ଲିପି ସାହାଯ୍ୟରେ ସେହି ଲିପିବର୍ଣ୍ଣିତ ବ୍ୟକ୍ତିଙ୍କୁ ପୁରୀ ଓ ଭୁବନେଶ୍ୱର ମନ୍ଦିରର ନିର୍ମାଣାଦି ସଙ୍ଗେ ସମ୍ପୃକ୍ତ ଥିବାର କୌଣସି ଇତିହାସଜ୍ଞ ଯେପରି ମନେ କରି ପାରନ୍ତି, ଭବଦେବ ଭଟ୍ଟଙ୍କ ପ୍ରଶସ୍ତିରୁ ତାଙ୍କୁ ଅନନ୍ତ ବାସୁଦେବ-ମନ୍ଦିରର ପ୍ରତିଷ୍ଠାତା ବୋଲି କଳ୍ପନା କରିବା ସେହିପରି । ମନ୍ଦିର ସନ୍ନିକଟରେ ପୁଷ୍କରିଣୀ ଖନନ ପ୍ରାଚୀନ ଉତ୍କଳୀୟ ଶିଳ୍ପର ରୀତି । ଏ ରୀତି ଲଙ୍ଘନ କରି କେଶରୀବଂଶୀୟ ରାଜଗଣ ଲିଙ୍ଗରାଜମନ୍ଦିର ନିକଟରେ ବିନ୍ଦୁସାଗର ଖନନ ନ କରାଇ ଭବଦେବ ଭଟ୍ଟଙ୍କ ଲାଗି ତାହା ବାକି ରଖିଦେଇ ଯାଇଥିବେ, ଏହା ଆମ୍ଭେମାନେ ବିଶ୍ୱାସ କରି ନ ପାରୁଁ ।

ଭବଦେବ ଭଟ୍ଟଙ୍କ ପ୍ରଶସ୍ତି ଓ ତହିଁର ସାରମର୍ମ ଆମ୍ଭେମାନେ ଏ ପୁସ୍ତକର ପରିଶିଷ୍ଟରେ ପ୍ରଦାନ କଲୁଁ ।

## ଅନନ୍ତ ବାସୁଦେବ ମନ୍ଦିର ।

ଅନନ୍ତ ବାସୁଦେବମନ୍ଦିରର ମାନଚିତ୍ର (Sketch plan) ପ୍ରକାଶିତ ଚିତ୍ରରେ ପ୍ରଦର୍ଶିତ ହୋଇଅଛି । ଏ ମନ୍ଦିରର ପ୍ରାଙ୍ଗଣ ପ୍ରାୟ ·୩୦୩ ଏକର ଓ ମନ୍ଦିରର ନିମ୍ନ ଭୂମି ପ୍ରାୟ ·୦୮୨ ଏକର । ଏ ମନ୍ଦିରର ନିର୍ମାଣପ୍ରଣାଳୀ ଠିକ ଲିଙ୍ଗରାଜ ମନ୍ଦିରର ଅନୁରୂପ । ଲିଙ୍ଗରାଜମନ୍ଦିରର ଗାତ୍ରସ୍ଥ କାରୁକାର୍ଯ୍ୟାଦି ସହିତ ଏହାର କାରୁକାର୍ଯ୍ୟାଦିର ମଧ୍ୟ ସାଦୃଶ୍ୟ ଅଛି । ଭୁବନେଶ୍ୱରରେ କତିପୟ ଦେଉଳ ପଶ୍ଚିମଦ୍ୱାରୀ; ଅନନ୍ତ ବାସୁଦେବମନ୍ଦିର ପଶ୍ଚିମଦ୍ୱାରୀ; ଠିକ୍ ବିନ୍ଦୁ-ସରୋବରର ପୂର୍ବଭାଗରେ ବ୍ରହ୍ମା ଘାଟ ଓ ମଣିକର୍ଣ୍ଣିକା ଘାଟର ମଧ୍ୟସ୍ଥାନରେ ଏ ମନ୍ଦିର ଅବସ୍ଥିତ । ପ୍ରବେଶଦ୍ୱାରଠାରୁ ଭୋଗମଣ୍ଡପ ଉପରକୁ ହଠାତ୍ ଉଠିବାର କୌଣସି ପାବଛ ନାହିଁ । ମନ୍ଦିରର ପ୍ରାଙ୍ଗଣ ମଧ୍ୟରେ ପ୍ରବେଶ କରି ନାଟ-

ମନ୍ଦିରର ଉତ୍ତର ଓ ଦକ୍ଷିଣ ଦିଗସ୍ଥ ଦ୍ୱାରଦେଇ ବାଟେ ମନ୍ଦିର ମଧ୍ୟକୁ ଯିବାକୁ ହେବ। ମନ୍ଦିରଟି ଚାରି ଅଂଶରେ ବିଭକ୍ତ । ବିମାନ, ଜଗମୋହନ, ନାଟମନ୍ଦିର ଓ ଭୋଗମଣ୍ଡପ । ବିମାନ ଏବଂ ଜଗମୋହନ ଉଭୟ ପଞ୍ଚରଥ ଦେଉଳ । ଏହାର ପୀଠ (plinth) ସବୁ ଖଡ଼ଆକାରରେ ଏବଂ ସ୍ତମ୍ଭଗୁଡ଼ିକ ଖଡ଼ଆକାରରେ ନିର୍ମିତ; ବିମାନ ତଳେ ଦୁଇଟି ପୀଠ ଅଛି; ଯଥା—ତଳ ପୀଠ, ଖୁର ପୀଠ। ତଳ ପୀଠର ଉଚ୍ଚତା ଫୁ ୧ । ୭ ଇଞ୍ଚ ଓ ଖୁରପୀଠର ଉଚ୍ଚତା ଫୁ ୩।୭ ଇଞ୍ଚ। ଖୁର ପୀଠ ପଦ୍ମପାଖୁଡ଼ାବିଶିଷ୍ଟ । ବାଢ଼ର ଉଚ୍ଚତା ଫୁ ୧୭ । ୧ ଇଞ୍ଚ; ଏହା ଜାଙ୍ଘ, ବରଣ୍ଡି, ବନ୍ଧନ, ଉପର ବରଣ୍ଡି, ଉପର ଜାଙ୍ଘ ଏହି ପାଞ୍ଚ ଭାଗରେ ବିଭକ୍ତ । ପୂର୍ବ ପଶ୍ଚିମ ଦିଗରେ ବିମାନର ବାହାରର ଉଚ୍ଚତା ଫୁ ୨୨।୧ ଇଞ୍ଚ ଏବଂ ଭିତରର ମାପ ଫୁ ୧୦ । ୭ ଇଞ୍ଚ । ଭିତର ପାଖର ଦକ୍ଷିଣ ଉତ୍ତର ମାପ ଫୁ ୧୦ । ୧୧ ଇଞ୍ଚ । ବିମାନ ଓ ଜଗମୋହନ ଭିନ୍ନ ନାଟମନ୍ଦିର ଓ ଭୋଗ-ମଣ୍ଡପର କାରୁକାର୍ଯ୍ୟ ଅତି ସାମାନ୍ୟ । ଜଗମୋହନର ଦ୍ୱାରଦେଶରେ ନବଗ୍ରହ ପ୍ରସ୍ତର ଫଳକ । ଏ ମନ୍ଦିରର ପ୍ରସ୍ତରଖଣ୍ଡମାନ ଅତି କୋମଳ; ମୂର୍ତ୍ତିଗୁଡ଼ିକ ଓ ମନ୍ଦିର ସ୍ଥାନେ ସ୍ଥାନେ ଭଗ୍ନ ଦଶାପନ୍ନ ।

ଉତ୍ତରଦିଗରେ ବାହାପଟରେ ଗୋଟିଏ ବାମନମୂର୍ତ୍ତି ଦୃଷ୍ଟ ହୁଏ । ଏହାର ମସ୍ତକ ଓ ପାଦ ଓ ଚାରିହସ୍ତ ମଧ୍ୟରୁ ଦୁଇଟି ଭଗ୍ନ । ଭଗ୍ନାବଶେଷରୁ ଅନୁମିତ ହୁଏ, ଏକପଦ ଊର୍ଦ୍ଧ୍ୱଦେଶକୁ ଉତ୍ତୋଳିତ ହୋଇଥିଲା । ଦକ୍ଷିଣପାର୍ଶ୍ୱର ଦୁଇ ହସ୍ତ ମଧ୍ୟରୁ ଉପରଟିରେ ଚକ୍ର ଓ ନିମ୍ନଟିରେ ଶଙ୍ଖ ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ ଅଛି । ମୂର୍ତ୍ତିର ଉଭୟ ପାର୍ଶ୍ୱରେ ଅନୁଚରଦ୍ୱୟ ପଦ୍ମପୁଷ୍ପ ଓ ବାଦ୍ୟଯନ୍ତ୍ର ହସ୍ତରେ ଦଣ୍ଡାୟମାନ । ଊର୍ଦ୍ଧ୍ୱଦେଶରେ ଉଡ଼୍ଡୀୟମାନ ପକ୍ଷୀ ମୂର୍ତ୍ତି; ତ୍ରିଭଙ୍ଗୀ ଲଳିଣ ଏହାର ପାଶ୍ଚାତ୍ୟ ଦିଗରେ ବିଦ୍ୟମାନ ।

ଦକ୍ଷିଣ ଦିଗରେ ବରାହମୂର୍ତ୍ତି ଅନନ୍ତଙ୍କ ପୃଷ୍ଠରେ ସମାସୀନ । ବରାହ-ଦେବଙ୍କ ମସ୍ତକାବରଣର କିଛିହିଁ ବିଶେଷତ୍ୱ ଲକ୍ଷିତ ହୁଏ । ପଶ୍ଚାତ୍ୟ ଦିଗରେ

ଦ୍ୱିଭଙ୍ଗ ବା ଦ୍ୱିପଦ ଖିଲଣ;  ଉପରେ କୀର୍ତ୍ତିମୁଖ । ଉଭୟ ପାର୍ଶ୍ୱରେ ଜୀବନ୍ତ ମୂର୍ତ୍ତି ତୁଲ୍ୟ ଦୁଇଟି ରାଜହଂସ ମଧ୍ୟ ନିର୍ମିତ ହୋଇଅଛି ।

ଦୂର୍ବଦ୍ଧଗଙ୍କ ପାର୍ଶ୍ୱଦେବତା ବିନଷ୍ଟ ହୋଇଅଛି; ବୋଧ ହୁଏ ଏହା ନୃସିଂହ ମୂର୍ତ୍ତି ଥିଲା ।

ବିମାନଟି ରେଖ ଦେଉଳ ଓ ଜଗମୋହନ, ନାଟମନ୍ଦିର, ଭୋଗମଣ୍ଡପ ପୀଢ଼ ଦେଉଳ ଶ୍ରେଣୀର । ବିମାନାଂଶରେ ଦିକ୍‌ପତି ଓ ଦିକ୍‌ପାଳମୂର୍ତ୍ତିମାନ ଯେଉଁ ଅନର୍ଥପଗର ଜଙ୍ଘ ବରଣ୍ଡିରେ ଅବସ୍ଥିତ, ତାହାର ଉପର ବରଣ୍ଡିରେ ସେମାନଙ୍କର ନାୟୀମୂର୍ତ୍ତି ସ୍ଥାପିତ ହୋଇଅଛି । ଜଗମୋହନରେ ଦିକ୍‌ପତି-ନିଯୋଗ ମଧ୍ୟ ଏହିପ୍ରକାର ।

ଲିଙ୍ଗରାଜ ଦେଉଳ ପରି ଏହାର ବିମାନର ଉତ୍ତର, ପୂର୍ବ ଓ ଦକ୍ଷିଣ ଦିକ୍‌ସଂଲଗ୍ନ ହୋଇ ଦ୍ୱିତଳ ଭବନ ମଧ୍ୟ ରହିଅଛି । ଏଗୁଡ଼ିକ ପଞ୍ଚଶ୍ରୀ ପୀଢ଼ ଦେଉଳ ।

ଜଗମୋହନର ଉତ୍ତରାଂଶରେ ଅବସ୍ଥିତ ପଞ୍ଚଫଣାଯୁକ୍ତ ନାଗ ନାଗିନୀ, ସ୍ତ୍ରୀ ପୁରୁଷ, ହସ୍ତିଶ୍ରେଣୀ, ଅଶ୍ୱସମୂହ, ପାଲିଙ୍କି ଆଦି ଦ୍ରଷ୍ଟବ୍ୟ । ଅନନ୍ତ ବାସୁଦେବ ମନ୍ଦିର ଗାତ୍ରସ୍ଥ ଜାନ୍ତବ ମୂର୍ତ୍ତିମାନ ଅତ୍ୟନ୍ତ ମନୋରମ ଓ ସ୍ୱାଭାବିକ । 'ହନୁମନ୍ତଲତା' ନାମକ କାରୁକାର୍ଯ୍ୟ ଜଗମୋହନର ଦକ୍ଷିଣରେ ଅତି ସୁନ୍ଦର ଓ ସ୍ୱାଭାବିକ ଭାବରେ ଖୋଦିତ । ମତ୍ସ୍ୟ ଓ ମକରାଦିର ପ୍ରତିକୃତି ମଧ୍ୟ ଜୀବନ୍ତ ପ୍ରାୟ ।

ଭୋଗମଣ୍ଡପର ଉତ୍ତର ଦକ୍ଷିଣ ଓ ପଶ୍ଚିମ ଦ୍ୱାରରେ ଲୌହନିର୍ମିତ ଘରଦୋଳ ବସା ଯାଇଥିଲା; ସେଥିରୁ କେତେକ ଖଣ୍ଡ ଭାଙ୍ଗିଯାଇ ସ୍ଥାନଚ୍ୟୁତ ହୋଇଅଛି । କୌଣସି ତୀର୍ଥଯାତ୍ରୀ ତାଳ ଶେଣୀ ଗୁଡ଼ିଏ ପୋତି ଦେଇ-ଅଛନ୍ତି; ସେଗୁଡ଼ିକ ଲୁହାର ସ୍ଥାନ ପୂରଣ କରିବ । ଆମ୍ଭେମାନେ ମନେ କରୁଁ, ମନ୍ଦିର କର୍ମିଟି ଲୁହାର ବରଗା ( Tee ) ଅଣି ଦେଲେ ଭଲ ହୁଅନ୍ତା;

ଭୁବନେଶ୍ୱର ।

ଅଭାବ ପକ୍ଷରେ ମନ୍ଦିର କମିଟି ଚେଷ୍ଟା କଲେ ସେ ତାଳଗୁଡ଼ିକ ସରଦୋଳ-ରୂପେ ବସନ୍ତା ।

ନାଟମନ୍ଦିରରେ ସ୍ତମ୍ଭୋପରି ଗରୁଡ଼ ମୂର୍ତ୍ତି ସ୍ଥାପିତ । ନାଟମନ୍ଦିରର ଅବସ୍ଥାନ ହେତୁରୁ ମନ୍ଦିରାଭ୍ୟନ୍ତର ଅତ୍ୟନ୍ତ ଅନ୍ଧକାରମୟ ହୋଇଅଛି । ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ଓ ପଣ୍ଡିତ ମନୋମୋହନ ଗଙ୍ଗୋପାଧ୍ୟାୟ-ମାନେ ଏ ମନ୍ଦିରରେ ଦୁଇଟି ମୂର୍ତ୍ତି ସ୍ଥାପିତ ଥିବାର ଉଲ୍ଲେଖ କରିଅଛନ୍ତି; କିନ୍ତୁ ତାହା ଭ୍ରାନ୍ତିମୂଳକ । ମନ୍ଦିର ମଧ୍ୟରେ ତିନୋଟି ମୂର୍ତ୍ତି ରହିଅଛନ୍ତି; ତିନୋଟିଯାକ ମୁଗୁନିପଥରର ମୂର୍ତ୍ତି । ପ୍ରଥମ ମୂର୍ତ୍ତିଟିର ଦୁଇଟି ହସ୍ତ; ଏକ ହସ୍ତରେ ହଳ ଓ ଅନ୍ୟ ହସ୍ତରେ ମୂଷଳ । ଏ ମୂର୍ତ୍ତିର ମସ୍ତକୋପରି ସପ୍ତ-ଫଣାବୃତ ସର୍ପ; ଏହା ଅନନ୍ତ ମୂର୍ତ୍ତି । ଦ୍ୱିତୀୟ ମୂର୍ତ୍ତିଟି ସୁଭଦ୍ରା ବୋଲି କେହି କେହି କହନ୍ତି; କେହି କେହି ଏହାଙ୍କୁ ନୃସିଂହ ବୋଲି କଳ୍ପନା କରନ୍ତି; ମାତ୍ର ଏହାଙ୍କର ଆକାର ଆଦି ଦୃଷ୍ଟିରେ ଏ ମୂର୍ତ୍ତି ସୁଭଦ୍ରା ବୋଲି ଆମ୍ଭେମାନେ ଅନୁମାନ କରୁଁ । ଏହାଙ୍କର ଦୁଇଟି ହସ୍ତ । ତୃତୀୟ ମୂର୍ତ୍ତିଟି ବାସୁଦେବ; ଏ ମୂର୍ତ୍ତିଟି ଚତୁର୍ହସ୍ତ । ଏହାର ହାତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ; ପଦ୍ମହସ୍ତଟି ଓ ପଦ୍ମଟି ଭାଙ୍ଗିଯାଇଥିଲେ ମଧ୍ୟ ପଦ୍ମମୃଣାଳ ବିଦ୍ୟମାନ ରହିଅଛି । ମୂର୍ତ୍ତିଗୁଡ଼ିକର ଗଠନ ସେତେ ସୁନ୍ଦର ନୁହେଁ; ମୂର୍ତ୍ତିଗୁଡ଼ିକର ଉଚ୍ଚତା ପ୍ରାୟ ପାଞ୍ଚ ଫୁଟ ।



ସେହି ବିମାନ ମଧ୍ୟରେ ଅନନ୍ତ ବାସୁଦେବ ଓ ସୁଭଦ୍ରାଙ୍କ ଅଡ଼କୁ ମୁଖ କରି ପୂର୍ବାଭିମୁଖୀନ ଭାବରେ ଲକ୍ଷ୍ମୀ ମୂର୍ତ୍ତି ସ୍ଥାପିତ । ଲକ୍ଷ୍ମୀଙ୍କ ମସ୍ତକୋପରି ହସ୍ତିଦ୍ୱୟ ଶୁଣ୍ଢ ଉତ୍ତୋଳନ କରି ରହିଅଛନ୍ତି । ପାର୍ଶ୍ୱବର୍ତ୍ତୀ ଚିତ୍ରପ୍ରଦର୍ଶିତ ସ୍ତମ୍ଭ ପରି ପ୍ରାୟ ଦୁଇ ଫୁଟ ଉଚ୍ଚ ଗୋଟିଏ ସ୍ତମ୍ଭ ଲକ୍ଷ୍ମୀଙ୍କ ଦକ୍ଷିଣ ପାର୍ଶ୍ୱରେ ରହିଅଛି । ସେବକମାନେ ଓ ଆମ୍ଭମାନଙ୍କ ସଙ୍ଗରେ ଥିବା ଶିଳ୍ପୀ ଏହାକୁ ସୁଦର୍ଶନ ବୋଲି ଚିହ୍ନାଇ ଦେଲେ ।

ମନ୍ଦିର ପ୍ରାଙ୍ଗଣର ଗୃହ କୋଣରେ ଗୃବେଟି କ୍ଷୁଦ୍ର ମନ୍ଦିର ଅବସ୍ଥିତ । ଏଥି ମଧ୍ୟରୁ ଦୁଇଟି ଭଗ୍ନଦଶାପନ୍ନ । ଏଥିର ଅଧିଷ୍ଠିତ ଦେବତା ନାହାନ୍ତି ପ୍ରଧାନ ମନ୍ଦିରର ନାଟମନ୍ଦିର ଓ ଜଗମୋହନର ଉତ୍ତରରେ ରନ୍ଧନଗୃହ ଜଗନ୍ନାଥ ଓ ଲିଙ୍ଗରାଜଙ୍କ ପ୍ରସାଦ ତୁଲ୍ୟ ଅନନ୍ତ ବାସୁଦେବଙ୍କ ପ୍ରସାଦ ମଧ୍ୟ କୈବଲ୍ୟରୂପେ ଗ୍ରହଣୀୟ; ଏହା ଏ ମନ୍ଦିର ଓ ଦେବତାଙ୍କର ପ୍ରାଚୀନତ୍ୱର ନିଦର୍ଶନ ବୋଲି କେହି କେହି କହନ୍ତି ।

ଅନନ୍ତ ବାସୁଦେବଙ୍କ ସମ୍ବନ୍ଧରେ କତିପୟ କିମ୍ବଦନ୍ତୀ ମଧ୍ୟ ପ୍ରଚଳିତ ଅଛି । ବିଶ୍ୱକର୍ମା ଏ ଅନନ୍ତ ବାସୁଦେବ ମୂର୍ତ୍ତିର ନିର୍ମାତା ଓ ଦେବରାଜ ଇନ୍ଦ୍ର ଏହାର ପ୍ରତିଷ୍ଠାତା । ରାବଣପୁତ୍ର ମେଘନାଦ ଇନ୍ଦ୍ରପୁରୀ ଆକ୍ରମଣ କରି ଅନନ୍ତ ବାସୁଦେବଙ୍କୁ ଲଙ୍କାକୁ ଘେନି ଆସିଥିଲା । ବିଭୀଷଣ ତାହା ରାକ୍ଷସରାଜ ରାବଣଙ୍କଠାରୁ ମାଗି ନେଇ ପୂଜା କରୁଥିଲେ । ପରେ ବିଭୀଷଣ ସେ ମୂର୍ତ୍ତିକୁ ରାମଚନ୍ଦ୍ରଙ୍କୁ ସମର୍ପଣ କରିଥିଲେ । ରାମଚନ୍ଦ୍ର ଲଙ୍କା ବିଜୟ ଉତ୍ତାରୁ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କଲା ବେଳେ ସେ ମୂର୍ତ୍ତିକୁ ସାଗରରାଜଙ୍କୁ ପ୍ରଦାନ କରିଥିଲେ । ବସୁଦେବ ଗୃହରେ ଜନ୍ମଗ୍ରହଣ କଲା ପରେ ବସୁଦେବ ତାଙ୍କୁ ଘେନି ଯମୁନା ପାର ହେଉଥିବା ବେଳେ ଜଳମଗ୍ନ ହେଲେ; ପରେ ଏକାମ୍ର କାନନରେ ଶିବାଗମନ ପୂର୍ବରୁ ଅବସ୍ଥାନ କରୁଥିଲେ ।

## — ବ୍ରହ୍ମା ମନ୍ଦିର ।

ବିନ୍ଦୁସରୋବରର ପଶ୍ଚିମପାର୍ଶ୍ୱରେ ମଣିକର୍ଣ୍ଣିକା ଘାଟ ନିକଟରେ ଆଉ ଗୋଟିଏ ଘାଟ ଅଛି, ତାହାର ନାମ ବ୍ରହ୍ମା ଘାଟ । ଭୁବନେଶ୍ୱରର ସ୍ଥାନୀୟ ଲୋକମାନଙ୍କଠାରୁ ଶୁଣିଲୁଁ, ଯେତେବେଳେ ଭୁବନେଶ୍ୱରସ୍ଥ କୌଣସି ଲୋକର ମୃତ୍ୟୁ କାଳ ଉପସ୍ଥିତ ହୁଏ, ଅର୍ଥାତ୍ ଅଣଗୃଣ ପବନ ବହେ, ସେତେବେଳେ ତାକୁ ଏହି ବ୍ରହ୍ମା ଘାଟକୁ ଘେନିଯାଇ ବିନ୍ଦୁ ସରୋବରୁ ବାକ୍ୟ ଜଳ ପ୍ରଦାନ କରନ୍ତି । ଯେଉଁ ଲୋକର ବ୍ରହ୍ମା ଘାଟରେ ମୃତ୍ୟୁ ହୁଏ, ସେ ଆଉ ପୁନର୍ଜନ୍ମ ଲାଭ କରେ ନାହିଁ ବୋଲି ପ୍ରବାଦ ଅଛି ।

ବ୍ରହ୍ମାଙ୍କ ମୂର୍ତ୍ତି ଅନ୍ୟ କୌଣସିଠାରେ ପୂଜା ପାଉଥିବାର ଦେଖା ଯାଏ ନାହିଁ; କିନ୍ତୁ ଏହି ବ୍ରହ୍ମା ଘାଟ ଉପରେ ଗୋଟିଏ କ୍ଷୁଦ୍ର ମନ୍ଦିର ମଧ୍ୟରେ ଚତୁର୍ମୁଖ ବ୍ରହ୍ମାଙ୍କ ମୂର୍ତ୍ତି ଦଣ୍ଡାୟମାନ ରହିଅଛି । ଏ ମୂର୍ତ୍ତିର ଚାରି ଦିଗକୁ ଚାରୋଟି ମୁଖ, ଚାରୋଟି ଭୁଜ; ସେଥି ମଧ୍ୟରୁ ଦୁଇଟି ଭୁଜ ଭଗ୍ନ ହୋଇ-ଅଛି; ଅନ୍ୟ ଦୁଇଟି ମଧ୍ୟରୁ ଗୋଟିକରେ ପୋଥି ଓ ଅନ୍ୟଟିରେ ସ୍ରୁବ । ଭଗ୍ନହସ୍ତ ଦୁଇଟି ପରେ ଯୋଡ଼ା ଯାଇଅଛି; କିନ୍ତୁ ନୂତନ ହସ୍ତ ମଧ୍ୟରୁ ସୁଦ୍ଧା ବାମ ହସ୍ତଟି ଭଗ୍ନ । ଗୋଟିକରେ ଜପମାଳା ଓ ଅନ୍ୟଟିରେ କମଣ୍ଡଳୁ ଧାରଣ । ଏ ମୂର୍ତ୍ତିର କାରୁକାର୍ଯ୍ୟ ଅତି ସୂକ୍ଷ୍ମ ଓ ସୁନ୍ଦର । ଏ ମୂର୍ତ୍ତିର କଟି-ଠାରୁ ଭଗ୍ନ ହୋଇଅଛି । ବ୍ରହ୍ମାଙ୍କର ପରିଧାନ କୌପୀନ । ପଦ୍ମପୀଠ ଉପରେ ହଂସ; ତଦୁପରି ବ୍ରହ୍ମା ଦଣ୍ଡାୟମାନ ।

ବ୍ରହ୍ମା ମନ୍ଦିରର ଜଗମୋହନରେ ଗୋଟିଏ ହର ପାର୍ବତୀ ମୂର୍ତ୍ତି ସ୍ଥାପିତ; ଏ ମୂର୍ତ୍ତିଟି ଆଦ୍ୟରୁ ସେଠାରେ ଥିଲା ପରି ବୋଧ ହୁଏ ନାହିଁ; ପରେ କୌଣସି ସ୍ଥାନରୁ ଆନୀତ ହୋଇ ସେଠାରେ ରକ୍ଷିତ ହୋଇଅଛି ।

## ଭବାନୀ ଶଙ୍କର ।

ବିନ୍ଦୁସାଗରର ଦକ୍ଷିଣରେ ଭବାନୀ ଶଙ୍କର ମନ୍ଦିର । ଏହା କାରୁକାର୍ଯ୍ୟ ହିସାବରେ ନ ହେଲେ ମଧ୍ୟ ପୌରାଣିକ ଦୃଷ୍ଟିରେ ବାସ୍ତବ ଗୌରବରେ ଦର୍ଶନୀୟ । ମନ୍ଦିରଟି ଭଗ୍ନଦଶାପନ୍ନ; କତିପୟ ଉଦ୍ୟମଶୀଳ ବ୍ୟକ୍ତି ଏ ମନ୍ଦିରର ଜୀର୍ଣ୍ଣସଂସ୍କାରରେ ପ୍ରୟାସୀ ହୋଇଅଛନ୍ତି; ସେମାନଙ୍କ ଚେଷ୍ଟା ସଫଳ ହେଉ !

ଭବାନୀ ଶଙ୍କର ମନ୍ଦିରରେ ପ୍ରଥମେ ସିଂହ ଓ ବୃଷଭଙ୍କର ଏକତ୍ରା-ବସ୍ଥାନ ଦର୍ଶନୀୟ । ପାର୍ବତୀଙ୍କ ବାହନ ସିଂହ ଓ ମହାଦେବଙ୍କ ବାହନ ବୃଷଭ ଏକତ୍ର ଗୋଟିଏ ସ୍ତମ୍ଭ ଉପରେ ସ୍ଥାପିତ ହୋଇଅଛନ୍ତି । ମନ୍ଦିର ମଧ୍ୟରେ

ପାର୍ବତୀ ମୂର୍ତ୍ତି ( ମୁଗୁନି ପ୍ରସ୍ତରନିର୍ମିତ ) ପୂର୍ବଙ୍କୁ ମସ୍ତକ ଓ ଦକ୍ଷିଣଙ୍କୁ ପାଦ ଦେଇ ଶୟାନ ହୋଇଅଛନ୍ତି । ଏ ମୂର୍ତ୍ତିର ଗଠନ ଅତି ସୁନ୍ଦର । ଏହାଙ୍କ ପାଦଦେଶରେ ଗୋଟିଏ ଶିବଲିଙ୍ଗ ଅବସ୍ଥିତ । ପୌରାଣିକ ଉପାଖ୍ୟାନ ଅନୁସାରେ ଦେବୀ କୀର୍ତ୍ତି ଓ ବାସ ରାକ୍ଷସଦ୍ୱୟଙ୍କୁ ବଧ କରି କ୍ଳାନ୍ତ ଭାବରେ ଶୋଇଅଛନ୍ତି, ଶଙ୍କର ତାଙ୍କର ପାଦ ଅଳିପି ସଚେତ କରାଉ-ଅଛନ୍ତି ।

## ଭୁବନେଶ୍ୱରସ୍ଥ ଅନ୍ୟାନ୍ୟ ମନ୍ଦିର ।

ଭୁବନେଶ୍ୱରର ଅନ୍ୟାନ୍ୟ ଅସଂଖ୍ୟ ମନ୍ଦିର ମଧ୍ୟରୁ କେବଳ କେତୋଟି ପ୍ରସିଦ୍ଧ ମନ୍ଦିରର ବିବରଣ ଆମ୍ଭେମାନେ ନିମ୍ନରେ ଲିପିବଦ୍ଧ କଲୁଁ ।

## ରାମେଶ୍ୱର ।

ଭୁବନେଶ୍ୱର ରେଲଓ୍ୱେ ଷ୍ଟେସନଠାରୁ ଭୁବନେଶ୍ୱର ମଧ୍ୟକୁ ଯିବାକୁ ହେଲେ ବାଟରେ ରାମେଶ୍ୱର ଦେଉଳ ଦୃଷ୍ଟ ହୁଏ । ଏ ମନ୍ଦିରକୁ ଗୁଣ୍ଡିଚା ଘର ମଧ୍ୟ ବୋଲାଯାଏ । ଅଶୋକାଷ୍ଟମୀ ଦିନ ଲିଙ୍ଗରାଜଙ୍କ ଚଳନ୍ତି ପ୍ରତିମା ରୁକୁଣାରଥରେ ଏହି ରାମେଶ୍ୱର ମନ୍ଦିର ପର୍ଯ୍ୟନ୍ତ ଆସନ୍ତି । ମନ୍ଦିରର କାରୁକାର୍ଯ୍ୟ ସେତେ ମନୋହର ନ ହେଲେ ମଧ୍ୟ ଅସୁନ୍ଦର ନୁହେଁ । ମନ୍ଦିର ମଧ୍ୟସ୍ଥ ଲିଙ୍ଗଟି ଅତି ବୃହତ୍ । ଏ ମନ୍ଦିରର ପଶ୍ଚାତ୍ ଦିଗରେ ଗୋଟିଏ ପୁଷ୍କରିଣୀ ଅଛି । ଏହି ପୁଷ୍କରିଣୀ ଅଷ୍ଟତୀର୍ଥ ମଧ୍ୟରେ 'ରାମହ୍ରଦ' ବୋଲି ପରିଚିତ । ସେବକମାନେ 'ଅଶୋକକୁଣ୍ଡ' ବୋଲି ଏହାର ନାମକରଣ ମଧ୍ୟ କରିଅଛନ୍ତି । ଅଶୋକାଷ୍ଟମୀ ଦିନ ଏହାର ଜଳ ଓ ଅଶୋକକଳିକା ପାନ କରନ୍ତି । ଏହି ମନ୍ଦିରର ଲିଙ୍ଗକୁ ରାମଚନ୍ଦ୍ର ପୂଜା କରିଥିଲେ ବୋଲି ରାମେଶ୍ୱର ନାମ ହୋଇ ଅଛି—ଏହାହିଁ ସେବକମାନଙ୍କର ବିଶ୍ୱାସ ! ଏହାର ନିକଟବର୍ତ୍ତୀ ଅନ୍ୟାନ୍ୟ କେତୋଟି କ୍ଷୁଦ୍ର ମନ୍ଦିରରେ ଲକ୍ଷ୍ମଣ ଭରତ ଶତ୍ରୁଘ୍ନଙ୍କ ପୂଜିତ ମହାଦେବ ଓ ଅନ୍ୟ ଦିଓଟି ମନ୍ଦିରରେ ଲବକୁଶପୂଜିତ ଲିଙ୍ଗ ବିରାଜିତ; ଅନ୍ୟ ଏକ ମନ୍ଦିରରେ ହନୁମାନ ଲିଙ୍ଗ ଇତ୍ୟାଦି ସେବକମାନେ ନାମକରଣ କରିଅଛନ୍ତି । ରାମେଶ୍ୱର ମନ୍ଦିରର ନିକଟରେ ଥିବା ଅନ୍ୟ

ମନ୍ଦିରରେ ପାଟଟି ମୂର୍ତ୍ତିକୁ ସେବକମାନେ ସୀତା ବୋଲି ପରିଚିତ କରାଉ-ଅଛନ୍ତି । ଏ ସମସ୍ତ ନାମକରଣ ସେବକମାନଙ୍କ କଳ୍ପନାପ୍ରସୂତ ।

ଏହି ରାମେଶ୍ୱର ମନ୍ଦିରର ନିକଟବର୍ତ୍ତୀ ଅରଣ୍ୟ ମଧ୍ୟରେ ରାଜପ୍ରାସାଦର ଭଗ୍ନାବଶେଷ ଦୃଷ୍ଟ ହୁଏ । ପୂର୍ବେ ସେଠାରେ ଯଜାତିକେଶରୀଙ୍କ ରାଜପ୍ରାସାଦ ଥିଲା ବୋଲି ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ମହାଶୟ ସାବ୍ୟସ୍ତ କରିଅଛନ୍ତି; କିନ୍ତୁ ଶ୍ରୀଯୁକ୍ତ ମନୋମୋହନ ଚଟ୍ଟୋପାଧ୍ୟାୟ ଏ ପ୍ରାସାଦ ଲଙ୍ଗରାଜ ହରି-ବର୍ମ ଦେବଙ୍କର ଥିଲା ଓ ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଓ ରାମେଶ୍ୱର ଆଦି ମନ୍ଦିର ହରିବର୍ମ ଦେବଙ୍କ କୀର୍ତ୍ତି ବୋଲି ସାବ୍ୟସ୍ତ କରିବାରେ ବ୍ୟସ୍ତ ।

ଅଶୋକକୁଣ୍ଡ ବା ରାମହ୍ରଦର ଜଳ ଶୁଷ୍କ ପ୍ରାୟ ।

## ବ୍ରହ୍ମେଶ୍ୱର ।

ଲିଙ୍ଗରାଜ ମନ୍ଦିରର ଉତ୍ତର ଦିଗରେ ବଡ଼ ଦେଉଳଠାରୁ ପ୍ରାୟ ଏକ ମାଇଲ ଦୂରରେ ବ୍ରହ୍ମେଶ୍ୱର ମନ୍ଦିର ଅବସ୍ଥିତ । ଏକାମ୍ର ପୁରାଣର ଚତୁର୍ଦ୍ଦଶ ଅଧ୍ୟାୟବର୍ଣ୍ଣିତ 'ବ୍ରହ୍ମେଶ୍ୱର ପ୍ରଭାବ'ର ବିବରଣ ଅନୁସାରେ ମହାଦେବଙ୍କ ଆଦେଶ ଅନୁସାରେ ବ୍ରହ୍ମା ବିଶ୍ୱକର୍ମା କର୍ତ୍ତୃକ ଏ ମନ୍ଦିର ନିର୍ମାଣ କରାଇ-ଥିଲେ । * ଐତିହାସିକ ବୃତ୍ତାନ୍ତ ଅନୁସାରେ ଉଦ୍ୟୋତ କେଶରୀଙ୍କ

* କୃତା ମୟା ଇୟଂ ବ୍ରହ୍ମନ୍ ଶୃଣୁଷ୍ୱ ଗଦତୋ ମମ ।
ଲିଙ୍ଗସ୍ୟାସ୍ୟ ହ୍ୟଦୂରେଣ ଈଷଦ୍ଧି ପ୍ରଚଳତାଂବରେ । ୪୦ ।
ଯନ୍ଦନ୍ତ୍ରସହସ୍ରେ କଳିଂଶୋତ୍ତରଶତାନ୍ତରେ ।
କୁଟୁମ୍ବାନ୍ତୃତନଂ ତତ ଧିବ୍ୟମାପ୍ନୋତି ତନ୍ନମ । ୪୧ ।

ଏକାମ୍ରପୁରାଣ, ୧୪ଶ ଅଧ୍ୟାୟ ।

ଆଦେଶ ଅନୁସାରେ ଏ ମନ୍ଦିର ନିର୍ମିତ ହୋଇଥିଲା । ବ୍ରହ୍ମେଶ୍ୱର ମନ୍ଦିରରୁ ଯେଉଁ ଶିଳାଲିପି ମିଳିଅଛି, ତହିଁରୁ ଜଣାଯାଏ, ଉଦ୍ୟୋତକେଶରୀ ଜନ୍ମେଜୟ କେଶରୀଙ୍କର ସପ୍ତମ ବଂଶଧର । କିନ୍ତୁ କେଶରୀ ବଂଶରେ ଦୁଇ ଜଣ ଜନ୍ମେଜୟ କେଶରୀଙ୍କ ନାମ ଦେଖାଯାଏ—ଜଣେ ଯଯାତି କେଶରୀଙ୍କ ପିତା, ଅନ୍ୟ ଜଣେ ଯଯାତିଙ୍କର ତ୍ରୟୋଦଶ ବଂଶଧର; ସେ ଖ୍ରୀଷ୍ଟୀୟ ୭୫୪ ଅବ୍ଦରୁ ୭୬୩ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଉଦ୍ୟୋତକେଶରୀଙ୍କୁ ଯଯାତିଙ୍କ ପିତାଙ୍କର ସପ୍ତମ ବଂଶଧର ବୋଲି କଳ୍ପନା କଲେ ଉଦ୍ୟୋତଙ୍କୁ ଅଷ୍ଟମ ଶତାବ୍ଦୀର ମଧ୍ୟ ଭାଗର ବ୍ୟକ୍ତି ବୋଲି ଧରିବାକୁ ହେବ; ଦ୍ୱିତୀୟ ଜନ୍ମେଜୟଙ୍କର ବଂଶଧର ବୋଲି କଳ୍ପନା କଲେ, ସେ ନବମ ଶତାବ୍ଦୀର ତୃତୀୟ ଭାଗରେ ପଡ଼ିବେ । ପ୍ରଥମ ଜନ୍ମେଜୟ ଯଯାତିଙ୍କର ପିତା ହୋଇ ପାରନ୍ତି, କିନ୍ତୁ ଓଡ଼ିଶାରେ କେଶରୀବଂଶର ରାଜତ୍ୱ ତାଙ୍କ ସମୟରୁ ଆରବ୍ଧ ହୋଇ ନାହିଁ । ଶିଳାଲିପିରେ ବର୍ଣ୍ଣିତ ବଂଶାବଳୀରୁ ନିମ୍ନଲିଖିତ କତିପୟ ନାମ ମିଳେ,— ୧ ଜନ୍ମେଜୟ, ୨ ଦୀର୍ଘରାବ, ୩ ଅପବର, ୪ ବିଚିତ୍ର, ୫ ଅଭିମନ୍ୟୁ, ୬ ଚଣ୍ଡୀହାର, ୭ ଉଦ୍ୟୋତକ । ଚଣ୍ଡୀହାରଙ୍କ ସ୍ତ୍ରୀଙ୍କ ନାମ କୋଲାବତୀ । ହଣ୍ଟର ସାହେବଙ୍କ ପ୍ରଦତ୍ତ ମାଦଳା ପାଞ୍ଜିରୁ ଗୃହୀତ କେଶରୀ-ବଂଶୀୟ ନରପତିମାନଙ୍କ ତାଲିକା ମଧ୍ୟରେ ଉଲ୍ଲିଖିତ କତିପୟ ନାମ ଦୃଷ୍ଟ ହୁଏ ନାହିଁ ସତ୍ୟ, କିନ୍ତୁ ଆମ୍ଭେମାନେ ମନେ କରୁଁ, ଉଦ୍ୟୋତକ ପ୍ରଭୃତି କେଶରୀଙ୍କର ଜ୍ୟେଷ୍ଠ ବଂଶ ନ ହୋଇ, କନିଷ୍ଠ ବଂଶ ଥିଲେ; ସେ ବଂଶର ଜ୍ୟେଷ୍ଠ ଅଂଶ ଓଡ଼ିଶାରେ ରାଜତ୍ୱ କରୁଥିବାରୁ କେବଳ ସେମାନଙ୍କ ନାମ ଉଲ୍ଲେଖ ଅଛି । ଏ ମନ୍ଦିରର ଆକୃତିଗତ ଗଠନ ଓ କାରୁକାର୍ଯ୍ୟ ଆଦି ସହିତ ଉଲ୍ଲିଖିତ ମତକୁ ମିଳାଇ ଦେଖିଲେ ବ୍ରହ୍ମେଶ୍ୱର ମନ୍ଦିର ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ତୃତୀୟ ଭାଗରେ ନିର୍ମିତ ବୋଲି ଜଣାଯାଏ ।

ବ୍ରହ୍ମେଶ୍ୱର ମନ୍ଦିରର ଶିଳାଲିପି ଏ ପୁସ୍ତକର ଶେଷରେ ପରିଶିଷ୍ଟ ସ୍ୱରୂପ ପ୍ରଦତ୍ତ ହୋଇଅଛି ।

ବ୍ରହ୍ମେଶ୍ୱର ମନ୍ଦିରର ପ୍ରାଙ୍ଗଣ ଅତି ବିସ୍ତୃତ । ଭିତର ଓ ବାହାର ଉଭୟ ପାର୍ଶ୍ୱରେ ପ୍ରାଚୀର ଅଛି । ବାହାର ପାଖର ପ୍ରାଚୀର ପୂର୍ବ-ପଶ୍ଚିମ ଦିଗରେ ଫୁ ୧୦୭।୯ ଇଞ୍ଚ ଉତ୍ତର-ଦକ୍ଷିଣ ଦିଗରେ ୭୯ ଫୁଟ । ଭିତରର ପ୍ରାଙ୍ଗଣ ମଧ୍ୟରେ ଚାରି କୋଣରେ ଚାରୋଟି କ୍ଷୁଦ୍ର ମନ୍ଦିର । ଏଥି ମଧ୍ୟରୁ ଦିଓଟିର ଲିଙ୍ଗ ଅପସାରିତ ହୋଇଅଛି । ମନ୍ଦିରର ପୀଠର ( pliuth ) ଉଚ୍ଚତା ଫୁ ୩।୯ ଇଞ୍ଚ । ଏହାର ମୁଖ ପୂର୍ବକୁ । ଜଗମୋହନ ଓ ବିମାନ ଉଭୟ ପଞ୍ଚ-ରଥ ଦେଉଳ । ବ୍ରହ୍ମେଶ୍ୱର ମନ୍ଦିରର ବିଶେଷତ୍ୱ ମଧ୍ୟରେ ତାହାର ଭିତର ଓ ବାହାର ଉଭୟ ପାଖ କାରୁକାର୍ଯ୍ୟପୂର୍ଣ୍ଣ । ବିମାନର କନକ ପଗର ପାଞ୍ଚଟି ଭୂମି । ଏ ମନ୍ଦିରର କନକ ପଗର କାରୁକାର୍ଯ୍ୟ ଅତ୍ୟନ୍ତ ସୁନ୍ଦର । ସେହି ପଗରେ ଯେଉଁ ବନଲତା ଖୋଦିତ ହୋଇଅଛି, ତାହା ଅତ୍ୟନ୍ତ ମନୋହର ଓ ଏ ମନ୍ଦିରର ବିଶେଷତ୍ୱ । ଅନର୍ଥ ପଗରେ 'ଭୋ' ଚିହ୍ନ ଏବଂ ନରନାରୀ ପ୍ରତିମୂର୍ତ୍ତି । ପାର୍ଶ୍ୱଦେବତା ଓ ନରନାରୀ ମୂର୍ତ୍ତିଗୁଡ଼ିକର ମୁଖଶ୍ରୀ ସୁନ୍ଦର ।

ଜଗମୋହନର ଉତ୍ତର ଦକ୍ଷିଣ ଦିଗରେ ଦିଓଟି ଗବାକ୍ଷ ଅଛି । ଉତ୍ତର ଦିଗରେ ନାରୀମୂର୍ତ୍ତି ପ୍ରସ୍ଫୁଟିତ ପଦ୍ମ ପ୍ରତି ଊର୍ଦ୍ଧ୍ୱ ମୁଖରେ ଅନାଇ ରହି-ଅଛି । ଦକ୍ଷିଣଦିଗରେ ଗୋଟିଏ ଆସନ ଉପରେ ଗୋଟିଏ ମନୁଷ୍ୟ ମୂର୍ତ୍ତି ନିର୍ମିତ; ଆସନର ପାଦମାନଙ୍କର କାରୁକାର୍ଯ୍ୟ ସୁନ୍ଦର । ଆସନର ନିମ୍ନଦେଶରେ ଗୋଟିଏ କମଣ୍ଡଳୁ ସ୍ଥାପିତ, ତତ୍ପାର୍ଶ୍ୱରେ ଶଙ୍ଖ; ଏ ମୂର୍ତ୍ତି ଗୋଟିଏ ତକିଆକୁ ଆଉଜି ବସିଅଛି; ତାହାର ପାର୍ଶ୍ୱରେ ଜଣେ ଭୃତ୍ୟର ମୂର୍ତ୍ତି । ଜଗମୋହନର ପ୍ରବେଶ ଦ୍ୱାରସ୍ଥ ସ୍ତମ୍ଭମାନଙ୍କରେ ପୁଷ୍ପଲତା, ମନୁଷ୍ୟ ଓ ଦ୍ୱାରପାଳମାନଙ୍କ ମୂର୍ତ୍ତି ଅଙ୍କିତ । ବିମାନ ଗାତ୍ରସ୍ଥ ଅଗଭୀର ଚିତ୍ର ମଧ୍ୟରେ ( bass reliefs ) ଶିବ ଭୈରବ ଓ ଚାମୁଣ୍ଡା ଆଦି ମୂର୍ତ୍ତି ଉଲ୍ଲେଖ-ଯୋଗ୍ୟ । ଗୁରୁ ଶିଷ୍ୟମାନଙ୍କୁ ଉପଦେଶ ଦେବା ଓ ଶିଷ୍ୟବୃନ୍ଦ ମନୋଯୋଗ ପୂର୍ବକ ଗୁରୁବାକ୍ୟ ଶ୍ରବଣ କରିବାର ଦୃଶ୍ୟ ଏ ମନ୍ଦିରରେ ଦର୍ଶନୀୟ ।

ଦେବଦେବୀମାନଙ୍କର ଚଉଦଟି ମୂର୍ତ୍ତି ଭିନ୍ନ ଅନ୍ୟାନ୍ୟ ମନୁଷ୍ୟମାନଙ୍କଠାରେ କେଶବିନ୍ୟାସ, ଗୃହର ଆବଶ୍ୟକ ନିତ୍ୟ ବ୍ୟବହାର୍ଯ୍ୟ ଯନ୍ତ୍ରାଦି ଓ ପୋଷାକ ପରିଚ୍ଛଦ ଓ ବାଦ୍ୟଯନ୍ତ୍ରସମୂହର ଦୃଶ୍ୟ ପ୍ରାଚୀନ ଉତ୍କଳର ଘଟିଣା ଜାତିର ପରିଚୟସୂଚକ । ମନ୍ଦିର ଗାତ୍ରସ୍ଥ ଜୀବଜନ୍ତୁ ଚିତ୍ର ମଧ୍ୟରେ ମର୍କଟ, ମୟୂର, ହସ୍ତୀ, ମତ୍ସ୍ୟ, କଚ୍ଛପ ଏବଂ ମକର ଚିତ୍ର ଉଲ୍ଲେଖଯୋଗ୍ୟ । ଜଗମୋହନର ଊର୍ଦ୍ଧ୍ୱ ଦେଶରେ ହରିଣଯୂଥ ଓ ମର୍କଟଶ୍ରେଣୀ ଦ୍ରଷ୍ଟବ୍ୟ । ଏ ମନ୍ଦିର ପବ୍ଲିକ୍ ଉଆର୍କସ୍ ଡିପାର୍ଟମେଣ୍ଟଦ୍ୱାରା ୫୬୯୧୬୮ ଖରଚରେ ମରାମତି ହୋଇଅଛି ।

ବ୍ରହ୍ମକୁଣ୍ଡ—ଅଷ୍ଟତୀର୍ଥ ମଧ୍ୟରୁ ବ୍ରହ୍ମକୁଣ୍ଡ ଗୋଟିଏ; ଏ ମନ୍ଦିରର ଦକ୍ଷିଣରେ ବ୍ରହ୍ମକୁଣ୍ଡ । ବର୍ତ୍ତମାନ ଏଥିରେ ଦଳ ମାଡ଼ିଗଲାଣି, ଜଳ ଅପରିଷ୍କାର ହୋଇଗଲାଣି ।

## ମେଘେଶ୍ୱର ଓ ଭାସ୍କରେଶ୍ୱର ।

ମେଘେଶ୍ୱର ଓ ଭାସ୍କରେଶ୍ୱର ଉଭୟ ମନ୍ଦିର ସମ୍ବନ୍ଧରେ ଟିକିଏ ମତଭେଦ ଅଛି । ସାଧାରଣତଃ ସ୍ଥାନୀୟ ଲୋକମାନେ ଯେଉଁ ମନ୍ଦିରକୁ ମେଘେଶ୍ୱର ମନ୍ଦିର ବୋଲି ଅନୁମାନ କରନ୍ତି, ଶାସ୍ତ୍ରୀୟ ପ୍ରମାଣ ଅନୁସାରେ ତାହା ଭାସ୍କରେଶ୍ୱର ମନ୍ଦିର ଓ ଯେଉଁ ମନ୍ଦିରକୁ ଭାସ୍କରେଶ୍ୱର ମନ୍ଦିର ବୋଲି କହୁଅଛନ୍ତି, ତାହା ମେଘେଶ୍ୱର ମନ୍ଦିର । ଭାସ୍କରେଶ୍ୱର ମନ୍ଦିର ସମ୍ବନ୍ଧରେ ପୁରାଣରେ ବର୍ଣ୍ଣିତ ଅଛି:—

"ତସ୍ମିନ୍ କ୍ଷେତ୍ରବରେ ଲିଙ୍ଗଂ ଭାସ୍କରେଶ୍ୱରସଂଜ୍ଞିତଂ ।<br>
ପଶ୍ୟନ୍ତି ଯେ ତୁ ତଂ ଦେବଂ ସ୍ନାତ୍ୱା କୁଣ୍ଡେ ମହେଶ୍ୱରଂ ।<br>
ଆଦିତ୍ୟେନାର୍ଚ୍ଚିତଂ ପୂର୍ବଂ ଦେବଦେବଂ ତ୍ରିଲୋଚନଂ ।<br>
ସର୍ବପାପବିନିର୍ମୁକ୍ତା ବିମାନବରମାସ୍ଥିତାଃ ॥

ଭୁବନେଶ୍ୱର ।

ସମୀପବର୍ତ୍ତୀ କୁଣ୍ଡରେ ସ୍ନାନ କରି ଭସ୍କରେଶ୍ୱରଙ୍କୁ ଦର୍ଶନ କରିବା ବିହିତ । କିନ୍ତୁ ଲୋକମାନେ ଯେଉଁ ସ୍ଥାନକୁ ଭସ୍କରେଶ୍ୱର ବୋଲି ନିର୍ଦ୍ଦେଶ କରୁଅଛନ୍ତି, ତାହାର ନିକଟରେ କୁଣ୍ଡ ନାହିଁ । କିନ୍ତୁ କି ହେତୁରୁ ଲୋକମାନେ ଏପରି ନାମ ପରିବର୍ତ୍ତନ କରିଅଛନ୍ତି, ତାହା ଆମ୍ଭମାନଙ୍କୁ ଅଜଣା; ତେବେ ଆମ୍ଭମାନେ ଅନୁମାନ କରୁଁ, ମାଘ ମାସରେ ଲିଙ୍ଗରାଜଙ୍କ ଚଳନ୍ତି ପ୍ରତିମା ଏ ମନ୍ଦିରକୁ ଆସି ଏ ମନ୍ଦିରର ମହାଦେବଙ୍କ ସହିତ ଭେଟ ହୋଇ ପୂଜା ପାନ୍ତି । ତେଣୁ ବୋଧ ହୁଏ ମାଘେଶ୍ୱରରୁ ମେଘେଶ୍ୱର ଉଚ୍ଚାରିତ ହେଉଥିବ । କିନ୍ତୁ 'ମେଘେଶ୍ୱର' ଶବ୍ଦର ମେଘମାନଙ୍କର ଈଶ୍ୱର ବୋଲି ଜଣାଯାଏ ।

ଭସ୍କରେଶ୍ୱର (ସ୍ଥାନୀୟ ମତରେ ମେଘେଶ୍ୱର) ଲିଙ୍ଗ ଦର୍ଶନୀୟ, ଏ ଲିଙ୍ଗ ଅତି ଉଚ୍ଚ; ପ୍ରାୟ ୯ ଫୁଟରୁ ଏ ଲିଙ୍ଗର ଉଚ୍ଚତା ଅଧିକ ହେବ ଓ ଏହାର ପରିଧି ପ୍ରାୟ ୧୬ ଫୁଟ । ମହାଦେବଙ୍କୁ ତଳୁ ପୂଜା କରାଯାଇ ପାରେ, କିନ୍ତୁ ତାଙ୍କ ଶିର ଉପରକୁ ସେବକମାନଙ୍କ ହାତ ପାଇବ ନାହିଁ ବୋଲି ଦେଉଳର ଭିତର ପାଖ ଲିଙ୍ଗ ପର୍ଯ୍ୟନ୍ତ ବିସ୍ତୃତ; ତହିଁ ଉପରେ ବସି ବ୍ରାହ୍ମଣମାନେ ଅଭିଷେକ କରନ୍ତି । ଏ ମନ୍ଦିର ପଶ୍ଚିମରେ ବୃଷଭ ରହିଅଛି; କାରୁକାର୍ଯ୍ୟ ହିସାବରେ ଏ ମନ୍ଦିରରେ ବିଶେଷ କୌଣସି କାରୁକାର୍ଯ୍ୟ ନାହିଁ ।

ମେଘେଶ୍ୱର (ସ୍ଥାନୀୟ ନାମ ଅନୁସାରେ ଭସ୍କରେଶ୍ୱର) ମନ୍ଦିର ଉଲ୍ଲିଖିତ ଭସ୍କରେଶ୍ୱର ମନ୍ଦିରଠାରୁ ଅଳ୍ପ ଦୂରରେ ପୂର୍ବ ଦିଗରେ ଅବସ୍ଥିତ । ଏହାର ଦ୍ୱାର ପଶ୍ଚିମ ଦିଗକୁ । ଏହାର କାରୁକାର୍ଯ୍ୟ ମଧ୍ୟ ଅତ୍ୟନ୍ତ ସୁନ୍ଦର ।

ଏକାମ୍ର ପୁରାଣର ବର୍ଣ୍ଣନା ଅନୁସାରେ ବ୍ରହ୍ମାଙ୍କ ମୁଖରୁ ଏକାମ୍ରମାହାତ୍ମ୍ୟ ଶ୍ରବଣ କରି ଦେବତାମାନେ ଏକାମ୍ରକୁ ଆସିବାକୁ ଉଦ୍ୟତ ହେଲେ; ସେମାନଙ୍କ ମଧ୍ୟରୁ ସୂର୍ଯ୍ୟଦେବ ଅଗ୍ରଗାମୀ ହେଲେ । ସୂର୍ଯ୍ୟଦେବ ଏକାମ୍ରର ଦୃଶ୍ୟ ଓ ପବିତ୍ରତା ଆଦିରେ ମୁଗ୍ଧ ହୋଇ ବିଶ୍ୱକର୍ମାଙ୍କୁ ଆଦେଶ ଦେଲେ, "ହେ ଏକାମ୍ର ବନରେ ମୋ ସକାଶେ ମନ୍ଦିର ନିର୍ମାଣ କର ।" ବିଶ୍ୱକର୍ମା

ଆଦେଶ ପାଳନ କରି ଅତି ସୁନ୍ଦର ମନ୍ଦରଟିଏ ନିର୍ମାଣ କଲେ । ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ଏ ମନ୍ଦିରର ଗଠନ ଓ ପ୍ରତ୍ନତତ୍ତ୍ୱ ଦୃଷ୍ଟିରେ ଅନୁମାନ କରନ୍ତି, ଏହା ବୌଦ୍ଧ ମନ୍ଦିର, ପରେ ହିନ୍ଦୁ ମନ୍ଦିରରେ ପରିଣତ ହୋଇଅଛି ।*

ଡାକ୍ତର ରାଜେନ୍ଦ୍ରଲାଲଙ୍କର ଉଲ୍ଲିଖିତ ଅଭିମତ ଅନୁସାରେ ଭଦ୍ରେଶ୍ୱର ମନ୍ଦିର ଅଧିକ ପ୍ରାଚୀନ ବୋଲି ଜଣାଯାଏ; କିନ୍ତୁ ଏ ସମ୍ବନ୍ଧରେ କୌଣସି ବିଶେଷ ପ୍ରମାଣ ମିଳି ନାହିଁ ।

ମେଘେଶ୍ୱର ମନ୍ଦିରର ନିର୍ମାଣ କାଳ ମେଘେଶ୍ୱର ମନ୍ଦିରର ଶିଳା-ଲିପିରୁ ଅନୁମାନ କରାଯାଇ ପାରେ । ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ମହାଶୟ ଯେତେବେଳେ ଭୁବନେଶ୍ୱର ତତ୍ତ୍ୱ ଅନ୍ୱେଷଣା କରିଥିଲେ, ସେ ସମୟରେ ସେ ଅନନ୍ତ ବାସୁଦେବ ମନ୍ଦିରର ପଶ୍ଚିମଦିଗସ୍ଥ ପ୍ରାଚୀର ଗାତ୍ରରେ ବ୍ରହ୍ମେଶ୍ୱର ମନ୍ଦିରର ଶିଳାଲିପି ଓ ଅନନ୍ତ ବାସୁଦେବ ମନ୍ଦିରର ଶିଳାଲିପି ଦେଖିଥିଲେ, ବର୍ତ୍ତମାନ ଉକ୍ତ ସ୍ଥାନରେ ଯେଉଁ ଶିଳାଲିପି ଅଛି, ତାହା ବ୍ରହ୍ମେଶ୍ୱର ଲିପି ନୁହେ । ଶ୍ରୀଯୁକ୍ତ ମନୋମୋହନ ଗଙ୍ଗୋପାଧ୍ୟାୟ ମହାଶୟ ଅନୁମାନ କରନ୍ତି, ଡ଼ାକ୍ତର ମିତ୍ରଙ୍କ ପରିଦର୍ଶନ ଉତ୍ତାରୁ ବ୍ରହ୍ମେଶ୍ୱର ଲିପି ସେଠାରୁ ସ୍ଥାନାନ୍ତରିତ ହୋଇ ମେଘେଶ୍ୱର ଲିପି ସେଠାରେ ସ୍ଥାପିତ ହୋଇଅଛି । ଗଙ୍ଗୋପାଧ୍ୟାୟ ମହାଶୟ ମଧ୍ୟ କଲିକତା ମିଉଜିୟମର ସୁପରିଣ୍ଟେଣ୍ଡେଣ୍ଟଙ୍କଠାରୁ ଅନୁସନ୍ଧାନ କରି ବ୍ରହ୍ମେଶ୍ୱର ଲିପି ସମ୍ବନ୍ଧରେ ସନ୍ତୋଷଜନକ କୈଫିୟତ ପାଇ ନାହାନ୍ତି; ସୁତରାଂ ବ୍ରହ୍ମେଶ୍ୱର ଲିପିଟି (ଯାହାର ନକଲ ଡ଼ାକ୍ତର ମିତ୍ରଙ୍କ ପୁସ୍ତକର ଦ୍ୱିତୀୟ ଭାଗର ୮୮ ପୃଷ୍ଠାରେ ଦୃଷ୍ଟ ହୁଏ) ହଜିଅଛି, ବୋଲି ଅନୁମାନ କରାଯାଏ ।

ମେଘେଶ୍ୱର ଶିଳାଲିପି ଆମ୍ଭେମାନେ ଏ ପୁସ୍ତକର ପରିଶିଷ୍ଟରେ ପ୍ରଦାନ କଲୁଁ । ସେଥିରୁ ଜଣାଯାଏ, ଗୌତମ ଗୋତ୍ରସମ୍ଭୂତ ସ୍ୱପ୍ନେଶ୍ୱରଙ୍କ ଆଦେଶରେ ଏ ମନ୍ଦିର ନିର୍ମିତ ହୋଇଥିଲା । ସ୍ୱପ୍ନେଶ୍ୱର ଗଙ୍ଗବଂଶୀୟ ନରପତିଙ୍କର ମହା-ସାମନ୍ତାଧିପତି ବା ସେନାନାୟକ ଥିଲେ । ଚୋଡ଼ଗଙ୍ଗଦେବଙ୍କ ପୁତ୍ର ରାଜରାଜ ଦେବ ମଧ୍ୟ ସ୍ୱପ୍ନେଶ୍ୱରଙ୍କ ଭଗିନୀ ସୁରମା ଦେବୀଙ୍କ ପାଣିଗ୍ରହଣ କରିଥିଲେ ।

* Rajendra Lal Mitra's Antiquities of Orissa—Vol. II. p 89.

ଅଧ୍ୟାପକ କିଲହର୍ଣ୍ଣଙ୍କ ମତାନୁସାରେ ଅନିୟଙ୍କ ଦେବ ୧୧୯୨ ଖ୍ରୀଷ୍ଟାବ୍ଦରେ ରାଜତ୍ୱ କରିଥିଲେ । ରାଜରାଜ ଦେବ ଅନିୟଙ୍କ ଦେବଙ୍କର ଜ୍ୟେଷ୍ଠ ଭ୍ରାତା; ରାଜରାଜ ଦେବ ୨୫ ବର୍ଷ ମାତ୍ର ରାଜତ୍ୱ କରିଥିଲେ; ସୁତରାଂ ୧୧୬୭ ଖ୍ରୀଷ୍ଟାବ୍ଦରୁ ରାଜରାଜ ଦେବଙ୍କ ରାଜତ୍ୱର ଆରମ୍ଭ ବୋଲି ଅନୁମାନ କରାଯାଇ ପାରେ । ଏହି ହିସାବ ଅନୁସାରେ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ମେଘେଶ୍ୱର ମନ୍ଦିର ନିର୍ମିତ ବୋଲି ଅନୁମାନ କରାଯାଇ ପାରେ ।*

## ରାଜା ରାଣୀ ଦେଉଳ ।

ରାଜା ରାଣୀ ଦେଉଳର ପାଖ ରେ ଅନ୍ୟ କୌଣସି ମନ୍ଦିର ନାହିଁ । କେହି କେହି କହନ୍ତି—ଏ ମନ୍ଦିର ଓଡ଼ିଶାର ତଦାନୀନ୍ତନ ରାଜାମାନଙ୍କର ବିଶ୍ରାମଗୃହ ଥିଲା; କିନ୍ତୁ ଯଥାର୍ଥରେ ତାହା ନୁହେଁ; ଏହାର ଦ୍ୱାରଦେଶସ୍ଥ ନବଗ୍ରହ ମୂର୍ତ୍ତି ଓ ଲକ୍ଷ୍ମୀ ମୂର୍ତ୍ତି ଆଦି ଦେଖିଲେ ଏହା ଦେବମନ୍ଦିର ବୋଲି ନିଃସନ୍ଦେହରୂପେ ବୋଲାଯାଇ ପାରେ । ରାଜା ରାଣୀ ଦେଉଳରେ ବର୍ତ୍ତମାନ କୌଣସି ଦେବତା ନାହାନ୍ତି, କିମ୍ବା କେବେ କୌଣସି ଦେବତା ସ୍ଥାପିତ ହୋଇଥିବାର ଚିହ୍ନ ସୁଦ୍ଧା ନାହିଁ । ଏ ମନ୍ଦିରରେ ଶିବଲିଙ୍ଗ ସ୍ଥାପିତ ହୋଇ ନ ଥାନ୍ତା ବୋଲି ଅନୁମାନ କରାଯାଏ । ବୋଧ ହୁଏ, କୌଣସି ବିଷ୍ଣୁ ମୂର୍ତ୍ତି ସ୍ଥାପିତ ହୋଇଥାନ୍ତା । ଭୁବନେଶ୍ୱରସ୍ଥ ଅନ୍ୟାନ୍ୟ ମନ୍ଦିରରେ ତ୍ରିଶୂଳ ବା ପତାକା ଧନୁ ବ୍ୟବହୃତ, କିନ୍ତୁ ରାଜା ରାଣୀ ଦେଉଳରେ ଝାଞ୍ଜବାଡ଼ି । ଚକ୍ର



ତୁଲ୍ୟ ଚିହ୍ନ ବ୍ୟବହୃତ ହୋଇଅଛି । ତେଣୁ ଏ ମନ୍ଦିରରେ କୌଣସି ବିଷ୍ଣୁମୂର୍ତ୍ତି ପୂଜିତ ହୋଇଥାନ୍ତେ ବୋଲି ଅନୁମାନ କରାଯାଏ । ଏ ମନ୍ଦିରର ନିର୍ମାଣରେ 'ରାଜାରାଣୀୟା' ପ୍ରସ୍ତର ଲାଗିଥିବାରୁ ଏହାର ନାମକରଣ 'ରାଜାରାଣୀ' ହୋଇଅଛି ବୋଲି କେହି କେହି ଅନୁମାନ କରନ୍ତି ।

* M. M. Ganguli's Orissa and Her Remains—p 331.




ମୁକ୍ତେଶ୍ୱର ଓ ସିଦ୍ଧେଶ୍ୱର ମନ୍ଦିରମାନଙ୍କ ନକ୍ସା ।

୮୯ ପୃଷ୍ଠା (କ)

ଏ ମନ୍ଦିର ଦୁଇ ଭାଗରେ ବିଭକ୍ତ । ଯଥା—ବିମାନ ଓ ଜଗମୋହନ ।
ବିମାନର କାରୁକାର୍ଯ୍ୟ ଅତି ସୁନ୍ଦର ଓ ସୂକ୍ଷ୍ମ । ଜଗମୋହନ ପରେ ନିର୍ମିତ
ବୋଲି କେହି କେହି ଅନୁମାନ କରନ୍ତି । ଡାକ୍ତର ରାଜେନ୍ଦ୍ରଲାଲ ଖ୍ରୀଷ୍ଟୀୟ
ନବମ ଶତାବ୍ଦୀ ଏ ମନ୍ଦିରର ନିର୍ମାଣ କାଳ ବୋଲି ଅନୁମାନ କରିଅଛନ୍ତି ।

ରାଜାରାଣୀ ମନ୍ଦିରସ୍ଥ ମୂର୍ତ୍ତିଗୁଡ଼ିକର କାରୁକାର୍ଯ୍ୟ ଅତି ଉତ୍କୃଷ୍ଟ । ନାଗ
ନାଗିଣୀ, ମିଥୁନମୂର୍ତ୍ତି, ନାରୀମୂର୍ତ୍ତିଗୁଡ଼ିକ ଅତ୍ୟନ୍ତ ସୁନ୍ଦର ଓ ପ୍ରାକୃତିକ ।
ଏ ମନ୍ଦିରର କାରୁକାର୍ଯ୍ୟ ବର୍ଣ୍ଣନା କରିବା ଭାଷାତୀତ । ଅଗ୍ନିଦେବତା
ପଦ୍ମପୁଷ୍ପୋପରି ଦଣ୍ଡାୟମାନ, ପାର୍ଶ୍ୱରେ ମେଷଟିଏ; ଅଗ୍ନିଙ୍କ ହସ୍ତରେ
ଅଗ୍ନିଶିଖା; ବୃଷଭୋପରି ଶିବମୂର୍ତ୍ତି; ବୃକ୍ଷଶାଖା ତଳେ ବା ବୃକ୍ଷଶାଖାହସ୍ତ
ହୋଇ ଦଣ୍ଡାୟମାନା ନାରୀ ମୂର୍ତ୍ତିଗୁଡ଼ିକର ବସନ ଭୂଷଣ ଅତୀବ ସୁନ୍ଦର ।
ଏ ମନ୍ଦିରସ୍ଥ ମାତୃମୂର୍ତ୍ତି ମଧ୍ୟ ଦର୍ଶନୀୟ । ପିଲାଟିଏ ହାତରେ ଧରି ତାର
ମୁଣ୍ଡରେ ହାତ ରଖି ଖେଳାଉଥିବାର ଦୃଶ୍ୟ ଅତି ସ୍ୱାଭାବିକ । କେତେକ
ଅଶ୍ଳୀଳ ମୂର୍ତ୍ତି ଥିଲେ ମଧ୍ୟ ତାହାର ସଂଖ୍ୟା ମୁକ୍ତେଶ୍ୱର ମନ୍ଦିରଠାରୁ ଅଳ୍ପ ।
ବାଟେକମିଷ୍ଟୀ ଇଲାକା ( Public Works Dept.) ଅନେକ ଅର୍ଥ ବ୍ୟୟ
କରି ଏ ମନ୍ଦିରର ଜୀର୍ଣ୍ଣ ସଂସ୍କାର କରିଅଛନ୍ତି ।

ଏ ମନ୍ଦିରରେ ପ୍ରାଚୀନ କାଳର କେଶବିନ୍ୟାସ ବସନ ଭୂଷଣ ଓ
ବାଦ୍ୟଯନ୍ତ୍ରାଦିର ଅନେକ ପରିଚୟ ମିଳେ । ପୂର୍ବେ ଉତ୍କଳରେ କିପରି
ଅଳଙ୍କାର ପରିଧାନ କରୁଥିଲେ—ଲୋକମାନେ କିପରି କେଶବିନ୍ୟାସ
କରୁଥିଲେ, ତାହାର ଅସଂଖ୍ୟ ଚିତ୍ର ଏ ମନ୍ଦିରଗାତ୍ରରେ ଖୋଦିତ ହୋଇ-
ଅଛି । ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ମହାଶୟ ଏ ଚିତ୍ରଗୁଡ଼ିକର ପ୍ରତିକୃତି
ସ୍ୱପ୍ରଣୀତ Antiquities of Orissa ରେ ପ୍ରକାଶ କରିଅଛନ୍ତି ।

### ମୁକ୍ତେଶ୍ୱର ଓ ସିଦ୍ଧେଶ୍ୱର ମନ୍ଦିର ।

ଲିଙ୍ଗରାଜମନ୍ଦିରର ଉତ୍ତର-ପୂର୍ବଦିଗରେ ବଡ଼ଦେଉଳ ବା ଲିଙ୍ଗରାଜ
ମନ୍ଦିରରୁ ଅର୍ଦ୍ଧକ୍ରୋଶ ଦୂରରେ ମୁକ୍ତେଶ୍ୱର ମନ୍ଦିର । ମୁକ୍ତେଶ୍ୱର, ସିଦ୍ଧେଶ୍ୱର,

ଭୁବନେଶ୍ୱର ।

କେଦାରଗୌରୀ ଓ ପଶୁରାମେଶ୍ୱର ମନ୍ଦିରମାନ ପରସ୍ପର ନିକଟବର୍ତ୍ତୀ । ମୁକ୍ତେଶ୍ୱର ଓ ସିଦ୍ଧେଶ୍ୱର ମନ୍ଦିରର ଚତୁଃପାର୍ଶ୍ୱ ପ୍ରାଚୀରପରିବେଷ୍ଟିତ । ମୁକ୍ତେଶ୍ୱର ମନ୍ଦିରର ଦ୍ୱାର ପୂର୍ବକୁ , ସିଦ୍ଧେଶ୍ୱର ମନ୍ଦିରର ଦ୍ୱାର ପଶ୍ଚିମକୁ । ଏ ସ୍ଥାନର ପୌରାଣିକ ନାମ ସିଦ୍ଧାରଣ୍ୟ । ଭୁବନେଶ୍ୱରର ଏ ଅଞ୍ଚଳ ନିତ୍ୟବସନ୍ତ ଲୀଳାଭୂମି । ଭୁବନେଶ୍ୱରର ସମସ୍ତ ମନ୍ଦିର ଓ ମୂର୍ତ୍ତି ମଧ୍ୟରେ ମୁକ୍ତେଶ୍ୱର ଓ ସିଦ୍ଧେଶ୍ୱର ମନ୍ଦିରର କାରୁକାର୍ଯ୍ୟ ସର୍ବୋତ୍କୃଷ୍ଟ ଓ ତତ୍କାଳୀନ ଶିଳ୍ପର ପରାକାଷ୍ଠା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରାଚୀରର ଅଳ୍ପ ଦୂରରେ ଏବଂ ଜଗମୋହନର ସମ୍ମୁଖଭାଗରେ ଅତି ମନୋରମ କାରୁକାର୍ଯ୍ୟପୂର୍ଣ୍ଣ ତୋରଣ ବିଦ୍ୟମାନ । ଏ ତୋରଣର କାରୁକାର୍ଯ୍ୟ ମଧ୍ୟରେ ପଦ୍ମ, ମାନବମସ୍ତକ, ନାରୀମୂର୍ତ୍ତି ଏବଂ ମକର ଦ୍ରଷ୍ଟବ୍ୟ ।

ମୁକ୍ତେଶ୍ୱର ଦେଉଳ ପଞ୍ଚରଥ ଶ୍ରେଣୀର; ରାଜାରାଣୀଆ ପ୍ରସ୍ତରରେ ଏହାର ଭୂମିମାନଙ୍କରୁ ଅଁଳା ପର୍ଯ୍ୟନ୍ତ ନିର୍ମିତ । ଅନ୍ୟାନ୍ୟ ମନ୍ଦିରମାନଙ୍କ ସହିତ ମୁକ୍ତେଶ୍ୱର ମନ୍ଦିର ନିର୍ମାଣ ରୀତିର ଟିକିଏ ପାର୍ଥକ୍ୟ ଅଛି । ମୁକ୍ତେଶ୍ୱର, ପର୍ଶୁରାମେଶ୍ୱର ଓ ଉତ୍ତରେଶ୍ୱର ଦେଉଳମାନଙ୍କର ଦିକ୍‌ପାଳ ସ୍ତମ୍ଭରେ ଅନ୍ୟାନ୍ୟ ଦେଉଳ ପରି ପାଞ୍ଚଟି ଅଂଶ ନାହିଁ ; କେବଳ ଜାଙ୍ଘ ଓ ଉପରି ଆଉ ରେଖ ଦେଉଳ ପରି ହୋଇଅଛି ।

ଏହାର ଜଗମୋହନର ଓ ବିମାନର ମାପ ବହିର୍ଦ୍ଦେଶରେ ଯଥାକ୍ରମେ ୨୭ ଫୁଟ ଓ ୧୫ ଫୁଟ—ସମଚତୁଷ୍କୋଣାକାର । ଏହି ମନ୍ଦିରର ପୀଠ ଅତି ନୀଚ—ଫୁଟ ୨ ଇଞ୍ଚ ମାତ୍ର ।

ଉତ୍ତର ଓ ଦକ୍ଷିଣ କାନ୍ଥରେ ଆଲୋକ ଓ ବାୟୁ ଗମନାଗମନ ନିମିତ୍ତ ଦୁଇଟି ପ୍ରସ୍ତରବାତାୟନ ଅଛି । ଏ ମନ୍ଦିରରେ ପଦ୍ମାସନା ମହାଲକ୍ଷ୍ମୀ ମୂର୍ତ୍ତି, ଉଡ଼୍ଡୀୟମାନ ଗନ୍ଧର୍ବ ମୂର୍ତ୍ତି, ଗଙ୍ଗାଯମୁନା ମୂର୍ତ୍ତି, ନନ୍ଦୀ ଓ ମହାକାଳ ମୂର୍ତ୍ତି



ମୁକ୍ତେଶ୍ୱର ମନ୍ଦିରର ଭିତର ଛାତର ଚନ୍ଦ୍ରାତପର କାରୁକାର୍ଯ୍ୟ ।

୯୧ ପୃଷ୍ଠା

ବିମାନ ଓ ଜଗମୋହନ ଗାତ୍ରରେ ଦର୍ଶନୀୟ । ହସ୍ତୀ ଉପରେ ସିଂହ, ସିଂହ ଉପରେ ମନୁଷ୍ୟ ମୂର୍ତ୍ତି ମଧ୍ୟ ଅତି ସୁନ୍ଦର ।

ଜଗମୋହନର ଦକ୍ଷିଣ ଦିଗରେ ଅନେକଗୁଡ଼ିଏ କ୍ଷୁଦ୍ର ହସ୍ତୀ ନିର୍ମିତ ହୋଇଅଛି । ହାତଗୁଡ଼ିକ ଆଉଜାଇ ପଡ଼ିଅଛନ୍ତି । ଊର୍ଦ୍ଧ୍ୱ ଦେଶରେ ବାମନ ମୂର୍ତ୍ତି, ନିମ୍ନଦେଶରେ ଦୁଇଟି ନାରୀମୂର୍ତ୍ତି । ଏ ମନ୍ଦିରର ନାଗନାଗିଣୀ ମୂର୍ତ୍ତିମାନ ମଧ୍ୟ ଅତି କମନୀୟ । ନାଗିଣୀମାନଙ୍କ ହସ୍ତରେ ପଦ୍ମ ଏବଂ କୌଣସି କୌଣସିଟିରେ ଶଙ୍ଖ । ମୁକ୍ତେଶ୍ୱରର ମନ୍ଦିର ଗାତ୍ରରେ ଅସଂଖ୍ୟ ବର୍ଣ୍ଣନାତୀତ ମୂର୍ତ୍ତି ରହିଅଛି ।

ମନ୍ଦିରର ବହିର୍ଦ୍ଦେଶରେ ସପ୍ତଫେଣାବିଶିଷ୍ଟ ପୁରୁଷ ମୂର୍ତ୍ତି; ଏହା ବୋଧ ହୁଏ ଅନନ୍ତ ମୂର୍ତ୍ତି; ଅନ୍ୟଟି ଅଷ୍ଟଭୁଜା ।

ମୁକ୍ତେଶ୍ୱର ମନ୍ଦିରର ପ୍ରସ୍ତର ଚନ୍ଦ୍ରାତପର ଶୋଭା ଶିଳ୍ପସମାଲୋଚକଙ୍କ ସୁଦ୍ଧା ନୟନ ମନ ଆକର୍ଷଣ କରି ପାରେ ।

ମୁକ୍ତେଶ୍ୱର ମନ୍ଦିରର ଅନେକାଂଶ ଭଗ୍ନ ହୋଇଥିଲା । ପବ୍ଲିକ୍ ଓ୍ୱାର୍କସ୍ ଡିପାର୍ଟମେଣ୍ଟ ତାହା ମରାମତ କରାଇଅଛନ୍ତି । ଏ ମରାମତ ଅଂଶ ପ୍ରାଚୀନ ଅଂଶଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ବୋଧ ହେଉଅଛି । ଏଥିରେ ଟ ୪୨୭୭୯ ବ୍ୟୟ ହୋଇଅଛି ବୋଲି ଜଣାଯାଏ ।

ମୁକ୍ତେଶ୍ୱର ମନ୍ଦିର ପ୍ରାଙ୍ଗଣସ୍ଥ ବକୁଳବୃକ୍ଷର ନିମ୍ନଦେଶରେ ସପ୍ତର୍ଷି ମୂର୍ତ୍ତି ଉଲ୍ଲେଖଯୋଗ୍ୟ । ଏମାନଙ୍କ ମଧ୍ୟରେ ସୂର୍ଯ୍ୟ ଦେବଙ୍କର ମଧ୍ୟ ଗୋଟିଏ ମୂର୍ତ୍ତି ଅଛି । ଏଥିର ଦୁଇଟି ହସ୍ତ; ମାତ୍ର ହସ୍ତ ଦୁଇଟି ଭଗ୍ନ ହୋଇ ଯାଇ ଅଛି । ଏ ମୂର୍ତ୍ତିର ବସ୍ତ୍ରପରିଧାନ ପ୍ରଣାଳୀରେ ମଧ୍ୟ କିଛି ବିଶେଷତ୍ୱ ଅଛି ।

ଭୁବନେଶ୍ୱର ।

ମୁକ୍ତେଶ୍ୱର ମନ୍ଦିରର ଉତ୍ତର-ପଶ୍ଚିମରେ ସିଦ୍ଧେଶ୍ୱର ମନ୍ଦିର । ସିଦ୍ଧେଶ୍ୱର ମନ୍ଦିର ପଞ୍ଚରଥବିଶିଷ୍ଟ; ଏହାର ଜଗମୋହନ ନଡୁମୋହନ ଶ୍ରେଣୀର, ଜନକ ପଗର ପଞ୍ଚ ଭୂମି; ଏଥିରେ ବିଶେଷ କୌଣସି କାରୁକାର୍ଯ୍ୟ ନ ଥିଲେ ମଧ୍ୟ ଏହାର ସରଳ ସୌନ୍ଦର୍ଯ୍ୟ ଏହାର ଶୋଭା ବୃଦ୍ଧି କରୁଅଛି । ପବ୍ଲିକ୍ ଓ୍ୱାର୍କସ୍ ଡିପାର୍ଟମେଣ୍ଟ ଏହାକୁ ମଧ୍ୟ ମରାମତ କରିଅଛନ୍ତି ।

ମୁକ୍ତେଶ୍ୱର ଓ ସିଦ୍ଧେଶ୍ୱର ମନ୍ଦିରମାନଙ୍କ ନିକଟରେ ପ୍ରସିଦ୍ଧ ମରୀଚିକୁଣ୍ଡ ଅବସ୍ଥିତ । ଏହାକୁ କେହି କେହି ମରୀଚକୁଣ୍ଡ ମଧ୍ୟ କହନ୍ତି । ଏ କୁଣ୍ଡର ଜଳ ସମ୍ବନ୍ଧରେ ଏକ ଅଦ୍ଭୁତ ଲୋକବିଶ୍ୱାସ ଓ ପ୍ରଚଳିତ ପ୍ରଥା ଅଛି । ଅଶୋକାଷ୍ଟମୀ ରୁକୁଣାରଥ ପ୍ରତିଷ୍ଠା ହେବାଲାଗି ଏ କୁଣ୍ଡରୁ ପ୍ରଥମେ ଏକ ମାଠିଆ ଜଳ ଯାଏ; ତଦନନ୍ତର ଏକ ମାଠିଆ ଜଳ ପୁରୀ ରାଜାଙ୍କ ଘରକୁ ଯାଏ । ତଦନନ୍ତର ରାତି ନ ପାହୁଣୁ ଏକ ମାଠିଆ ଜଳ କଢ଼ାଯାଇ ନିଲାମ ହୁଏ; କୌଣସି କୌଣସି ବର୍ଷ ଏହି ଜଳ ମାଠିଆକ ହଜାର ହଜାର ଟଙ୍କାରେ ସୁଦ୍ଧା ନିଲାମ ହୋଇଥାଏ । ବିଶ୍ୱାସ ଅଛି ଯେ, ବନ୍ଧ୍ୟା ସ୍ତ୍ରୀମାନେ ଅଶୋକାଷ୍ଟମୀରେ ଏ ଜଳରେ ସ୍ନାନ କଲେ ଗର୍ଭବତୀ ହୁଅନ୍ତି । ସେ ଦିନକ-ମଧ୍ୟରେ ଯେ କୁଣ୍ଡର ଜଳ ଶେଷକୁ ଦୁଇ ଅଣା ଚାରି ଅଣାରେ ସୁଦ୍ଧା ବିକ୍ରୟ ହୋଇଥାଏ । ଯେଉଁ ସେବକଙ୍କର ଏଥିରେ ଅଂଶ ଅଛି, ସେମାନେ-ଏଦିନର ଆୟକୁ ବଣ୍ଟନ କରି ନିଅନ୍ତି ।

### ପର୍ଶୁରାମେଶ୍ୱର ।

ସିଦ୍ଧାରଣ୍ୟର ପଶ୍ଚିମରେ ପର୍ଶୁରାମେଶ୍ୱର । ଏ ମନ୍ଦିର ବର୍ତ୍ତମାନ ଯେପରି ଜୀର୍ଣ୍ଣ ଦଶାପନ୍ନ, ସେଥିରୁ ଅନୁମିତ ହୁଏ, ଏହା ଭୁବନେଶ୍ୱରସ୍ଥ ଅତି ପ୍ରାଚୀନ ମନ୍ଦିର । ଭୁବନେଶ୍ୱରସ୍ଥ ଅନ୍ୟାନ୍ୟ ମନ୍ଦିରର କାରୁକାର୍ଯ୍ୟଠାରୁ ଏହାର କାରୁ-କାର୍ଯ୍ୟ ଟିକିଏ ସ୍ୱତନ୍ତ୍ର । ଏହାର ଜଗମୋହନର ଗଠନ ପ୍ରଣାଳୀରେ ମଧ୍ୟ ବିଶେଷତ୍ୱ ଲକ୍ଷିତ ହୁଏ । ଜଗମୋହନଟି [illegible] ଦୀର୍ଘାକାର, ଦୈର୍ଘ୍ୟ-

ଭାବରେ ବିମାନର ସମ୍ମୁଖ ଦିଗରୁ ନିର୍ମିତ, ମନ୍ଦିରର ମୁଖ ପର୍ଶ୍ଚିମକୁ, ମନ୍ଦିରର ଭିତର ଅଂଶ ଖ୍ରୀଷ୍ଟିୟାନ୍‌ମାନଙ୍କ ଗିର୍ଜା ପରି । ଜଗମୋହନ ପାର୍ଶ୍ୱରେ ଦୁଇ ଧାଡ଼ି ସ୍ତମ୍ଭ ଉପରେର ଛାତକୁ ଧରି ରଖିଅଛି । ଏ ମନ୍ଦିରର ପୀଠ ( plinth ) ନାହିଁ । ବିମାନର ବାଡ଼ ଠିକ ତଳ ପଟ୍ଟନରୁ ଉଠିଅଛି । ଜାଙ୍ଘରେ ମଧ୍ୟ ସାଧାରଣ ଦେଉଳ ପରି ପାଞ୍ଚଟି ବିଭିନ୍ନ ଅଂଶ ଅଛି । ଏ ପାଞ୍ଚଟି ବିଭିନ୍ନାଂଶ ମଧ୍ୟ ତିନି ଭାଗରେ ବିଭକ୍ତ; ଯଥା—ପାଦ, କୁମ୍ଭ, ବସନ୍ତ । ପଦ୍ମବଦଳରେ ପ୍ରସ୍ଫୁଟିତ କୁମୁଦ ଖୋଦିତ ହୋଇଅଛି ।

ବିମାନଟି ତ୍ରିରଥ ଦେଉଳ । ବାଡ଼ ମଧ୍ୟ ଦୁଇ ଭାଗରେ ବିଭକ୍ତ, ଯଥା—ବରଣ୍ଡି ଓ ଜାଙ୍ଘ; ବାଡ଼ ଓ ରେଖାମଧ୍ୟରେ ଗୋଟିଏ ବ୍ୟବଧାନ ରହିଅଛି । ସିଂହ ମୂର୍ତ୍ତିମାନ ମନ୍ଦିର ମରାମତି ବେଳେ ନିର୍ମିତ । Public Works department ୨୩୪୭୫ ଙ୍କା ବ୍ୟୟ କରି ଏ ମନ୍ଦିରର ଜୀର୍ଣ୍ଣସଂସ୍କାର କରାଇଅଛନ୍ତି ।

ଡ଼ାକ୍ତର ରାଜେନ୍ଦ୍ରଲାଲ ମିତ୍ରଙ୍କ ମତରେ ଏ ମନ୍ଦିର ବିହାରର ବୁଦ୍ଧ ବିହାର—( Hall of Buddhists ) ଅନୁକରଣରେ ନିର୍ମିତ । * ଏ ମନ୍ଦିରର ଅଧିଷ୍ଠାତ୍ରୀ ଦେବତା ବୈତାଳେଶ୍ୱର । ଏକାମ୍ର ପୁରାଣର ବର୍ଣ୍ଣନା ଅନୁସାରେ ଶିବାଦେଶରେ କୀର୍ତ୍ତି ଓ ବାସ ରାକ୍ଷସଦ୍ୱୟ ଏଠାରେ ଶିବାରାଧନା କରିଥିଲେ । †

---

* Rajendralal's Antiquities of Orissa-Vol. II. p 93.

† ସିଦ୍ଧେଶ୍ୱରସମୀପଂ ତୁ ଯକ୍ଷିଙ୍ଗ ବର୍ତ୍ତତେଽପର ।
ପଶ୍ଚିମସ୍ୟାଂ ଦିଶି ଶମ୍ଭୁଂ ସେବ୍ୟାରାଧନଂ କୁରୁ ।
ଏକାମ୍ର ପୁରାଣ ।

ଭୁବନେଶ୍ୱର କାହିଁକି, ଓଡ଼ିଶାର ଅନ୍ୟାନ୍ୟ ଦେଉଳ ସହିତ ପଶୁ୍ରାମେଶ୍ୱର ଦେଉଳକୁ ତୁଳନା କଲେ ସ୍ପଷ୍ଟ ପ୍ରତୀୟମାନ ହେବ ଯେ, ପଶୁ୍ରାମେଶ୍ୱର ଦେଉଳ ସାଧାରଣ ମନ୍ଦିରମାନଙ୍କଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଏହାର ଗଠନପ୍ରଣାଳୀ ଅନ୍ୟାନ୍ୟ ମନ୍ଦିରର ଗଠନପ୍ରଣାଳୀ ଅପେକ୍ଷା ଏକାବେଳକେ ପୃଥକ୍ । ଏ ମନ୍ଦିରର କାରୁକାର୍ଯ୍ୟର ମଧ୍ୟ ବିଶେଷତ୍ୱ ଅଛି । ଓଡ଼ିଶାର ଅନ୍ୟ କୌଣସି ଦେଉଳରେ ଇନ୍ଦ୍ର ଶିକାରର ଦୃଶ୍ୟ ଚିତ୍ରିତ ହୋଇ ନାହିଁ, କାରଣ ଋଷିମାନେ ଇନ୍ଦ୍ରଙ୍କୁ ସେମାନଙ୍କର ଶିକାରର ବସ୍ତୁ ବୋଲି ମନେ କରନ୍ତି ନାହିଁ । କିନ୍ତୁ ପଶୁ୍ରାମେଶ୍ୱର ଦେଉଳରେ ଏଥିର ଚିତ୍ର ଦୃଷ୍ଟ ହୁଏ । ପୁନଶ୍ଚ ଏ ମନ୍ଦିର ଗାତ୍ରସ୍ଥ ଗଣେଶମୂର୍ତ୍ତିର ମଧ୍ୟ ବିଶେଷତ୍ୱ ଅଛି; ଏ ଗଣେଶ ମାନବାକୃତି । ଜଗମୋହନର ଊର୍ଦ୍ଧ୍ୱ ଦେଶରେ ନଅଟି ପରିବର୍ତ୍ତରେ ଆଠୋଟି ଗ୍ରହମୂର୍ତ୍ତି ଦୃଷ୍ଟ ହୁଏ । ଅନ୍ୟାନ୍ୟ ମନ୍ଦିର ପରି ଦ୍ୱାରବନ୍ଧ ଉପରେ ଗଜଲକ୍ଷ୍ମୀ ମୂର୍ତ୍ତି ଖୋଦିତ ନ ହୋଇ ଗଣେଶମୂର୍ତ୍ତି ଖୋଦିତ । ବିମାନର ଜାଙ୍ଘ ଅଂଶ ପାଞ୍ଚ ଭାଗରେ ବିଭକ୍ତ ନ ହୋଇ ତିନୋଟି ଭାଗରେ ବିଭକ୍ତ; ମଧ୍ୟମଟି କୁମ୍ଭ ନ ହୋଇ କୁମୁଦ ହୋଇଅଛି ।

ଏ ମନ୍ଦିର ଖ୍ରୀଷ୍ଟୀୟ ଷଷ୍ଠ ବା ସପ୍ତମ ଶତାବ୍ଦୀରେ ନିର୍ମିତ ହୋଇଥିବାର ଅନୁମିତ ହୁଏ ।

ଏହାର ପୂର୍ବଦିଗରେ ଗୋଟିଏ ରତ୍ନମନ୍ଦିର ଅଛି; ଏହାର ନାମ ଅଜ୍ଞାତ; ଏହାର ଦକ୍ଷିଣରେ ଅଳ୍ପଦୂରରେ କୋଟିତୀର୍ଥେଶ୍ୱର; ଏହା ପଞ୍ଚରଥ ଦେଉଳ; ଏହାର ନିକଟରେ କୋଟିତୀର୍ଥ ନାମକ ଏକ କ୍ଷୁଦ୍ର ପୁଷ୍କରିଣୀ ବା କୁଣ୍ଡ ବିଦ୍ୟମାନ । ଏହାର କୌଣସି ଜଗମୋହନ ନାହିଁ । ପୂର୍ବେ ଯେଉଁ ଜଗମୋହନ ଥିଲା, ତାହା ଭଗ୍ନଦଶାପନ୍ନ ହେବାରୁ ପବ୍ଲିକ୍ ଓ୍ୱାର୍କସ୍ ଡିପାର୍ଟମେଣ୍ଟ ତାହା ଦୂର କରି ଦେଇଅଛନ୍ତି । କୋଟିତୀର୍ଥେଶ୍ୱରର ଉତ୍ତର-ପୂର୍ବରେ ତୀର୍ଥେଶ୍ୱର; ଏହା ଗୋଟିଏ କ୍ଷୁଦ୍ର ପୀଢ଼ ଦେଉଳ । କୋଟି-ତୀର୍ଥେଶ୍ୱରର ଦକ୍ଷିଣ-ପଶ୍ଚିମରେ ରାମେଶ୍ୱର ମନ୍ଦିର ।

## କେଦାର ଗୌରୀ ।

କବିବର ରାଧାନାଥଙ୍କ 'କେଦାରଗୌରୀ' ପାଠ କରି କେହି କେହି ତାହାକୁ ଭୁବନେଶ୍ୱରସ୍ଥ କେଦାରଗୌରୀ ସମ୍ବନ୍ଧୀୟ କିମ୍ବଦନ୍ତୀ ବୋଲି ମନେ କରିଥାନ୍ତି; କିନ୍ତୁ ଯଥାର୍ଥରେ ତାହା ନୁହେଁ । ରାଧାନାଥଙ୍କ କେଦାର-ଗୌରୀ ଗୋଟିଏ ଇଂରାଜୀ ଗଳ୍ପର ଅନୁକରଣରେ ଲିଖିତ । ଭୁବନେଶ୍ୱରସ୍ଥ କେଦାରଗୌରୀ ସହିତ ତାହାର କୌଣସି ସମ୍ପର୍କ ନାହିଁ ।

କେଦାରକୁଣ୍ଡର ପଶ୍ଚିମରେ ଗୌରୀମନ୍ଦିର; ଏହାର ମୁଖ ପୂର୍ବକୁ; କେଦାରେଶ୍ୱର ମନ୍ଦିରର ମୁଖ ଦକ୍ଷିଣକୁ; ଗୌରୀମନ୍ଦିରର ଜଗମୋହନ ଏକାବେଳକେ ଭଗ୍ନ ହୋଇ ଯାଇଥିଲା; ଭେଦା ସଗ୍ରହ ଓ କେଶବାନନ୍ଦ ନାମକ ଜନୈକ ସନ୍ନ୍ୟାସିଙ୍କ ଚେଷ୍ଟାରେ ପୁନଶ୍ଚ ତାହା ନିର୍ମିତ ହେଉଅଛି, ସମ୍ପୂର୍ଣ୍ଣ ହୋଇ ନାହିଁ । ବୈରାଗୀ ମହାରଣାନାମକ ସ୍ଥାନୀୟ ଶିଳ୍ପୀ ସେ କାର୍ଯ୍ୟ କରୁଅଛି ।

ରାଜାରାଣୀୟା ପ୍ରସ୍ତରଦ୍ୱାରା ଏ ମନ୍ଦିର ନିର୍ମିତ । ମନ୍ଦିରର ପୀଠର (plinth) ଉଚ୍ଚତା ୧୫ ଫୁଟ ପାଞ୍ଚ ଇଞ୍ଚ; ଗୌରୀ ଦେଉଳ ପଞ୍ଚରଥ ଶ୍ରେଣୀର, କିନ୍ତୁ ଏହାର ପୀଠ ଦେଖିଲେ ତ୍ରିରଥ ଦେଉଳ ବୋଲି ଅନୁମିତ ହୁଏ । ପୀଠଟି ଦୁଇ ଭାଗରେ ବିଭକ୍ତ—ପଦ୍ମ ପୀଠ, ବେତାଳ ପୀଠ । ବେତାଳ ପୀଠରେ ଅନେକ ତପସ୍ୱୀ ବେତାଳ ମୂର୍ତ୍ତି ଖୋଦିତ । ଗୌରୀ ମନ୍ଦିରକୁ 'ଗୌଙ୍ଗ୍ରର' ଶ୍ରେଣୀର ବୋଲି ଶ୍ରୀଯୁକ୍ତ ମନୋମୋହନ ଗଙ୍ଗୋପାଧ୍ୟାୟ ମହାଶୟ ସାବ୍ୟସ୍ତ କରିଅଛନ୍ତି । ନୂତନ ଜଗମୋହନ ସପ୍ତରଥ ଶ୍ରେଣୀର ।

ଗୌରୀଦେବୀଙ୍କ ମୂର୍ତ୍ତି ଅତି ସୁନ୍ଦର । ତାହା ମୁଗୁନୀ ପ୍ରସ୍ତରରେ ନିର୍ମିତ; ଗୌରୀ ମୂର୍ତ୍ତିର ପାଦଦେଶରେ ଦୁଇଟି ହରିଣ ମୂର୍ତ୍ତି ପରସ୍ପର ବିପରୀତ ଦିଗରୁ ସ୍ଥାପିତ ହୋଇଥିଲେ; ମାତ୍ର ଗୋଟିଏ ହରିଣର ଗ୍ରୀବା ଭାଙ୍ଗି ଯାଇଅଛି ।

ଭୁବନେଶ୍ୱର ।

କେଦାରେଶ୍ୱର ମହାଦେବ ହେଲେ ମଧ୍ୟ ସେଠାରେ ବୃଷଭ ସ୍ଥାପିତ ନ ହୋଇ ଗରୁଡ଼ ମୂର୍ତ୍ତି ସ୍ଥାପିତ ହୋଇଅଛି । କେଦାରେଶ୍ୱର ସ୍ୱୟମ୍ଭୁ ଲିଙ୍ଗ ବୋଲି ପରିଚିତ । ଲିଙ୍ଗ ସମୁଦାୟ ଶକ୍ତି ମଧ୍ୟରେ ମାଙ୍କଡ଼ା ପଥର ପରି ରହିଅଛନ୍ତି; ଏ ଶକ୍ତି ମଧ୍ୟରେ ସର୍ବଦା ଜଳ ପୂର୍ଣ୍ଣ ରହିଅଛି; ବୋଧ ହୁଏ ପ୍ରାକୃତିକ ପ୍ରସ୍ରବଣ ଅଛି ।

କେଦାରେଶ୍ୱର ମନ୍ଦିରର ଦକ୍ଷିଣ ପାର୍ଶ୍ୱକୁ ଦ୍ୱିତୀୟ କେଦାର । ଏ ଲିଙ୍ଗଙ୍କୁ ସ୍ଥାନୀୟ ପଣ୍ଡାମାନେ 'ଦ୍ୱିତକେଦାର' ବା ଦ୍ୱିତୀୟ କେଦାର ବୋଲି ଚହ୍ନାଇ ଦିଅନ୍ତି; ସେମାନଙ୍କଠାରୁ ଜାଣିଲୁଁ "ଏ ଦ୍ୱିତୀୟ କେଦାର ଅସଲ ସ୍ୱୟମ୍ଭୁ ଲିଙ୍ଗ କେଦାରଙ୍କର ପ୍ରତିନିଧି, ପୂର୍ବେ ଲୋକମାନେ ଏହି କେଦାରଙ୍କ ପୂଜା କରୁଥିଲେ । କିନ୍ତୁ ଏବେ ସେ ପ୍ରଥା ଲୋପ ପାଇଗଲାଣି ।"

କେଦାରେଶ୍ୱର ମନ୍ଦିର ପଞ୍ଚରଥବିଶିଷ୍ଟ ।

ଦ୍ୱିତୀୟ କେଦାରେଶ୍ୱର ମନ୍ଦିରର ଦକ୍ଷିଣ ପଶ୍ଚିମରେ ଦ୍ୱିତୀୟ କପିଳେଶ୍ୱର ମନ୍ଦିର; ଗୌରୀକୁଣ୍ଡର ଉତ୍ତର ପଶ୍ଚିମରେ ଗୋଟିଏ ମନ୍ଦିର ମଧ୍ୟରେ ଗୋଟିଏ ପ୍ରକାଣ୍ଡ ହନୁମାନ ମୂର୍ତ୍ତି ସ୍ଥାପିତ । ଏହା ମହାବୀର ବୋଲି ପରିଚିତ ।

କେଦାରଗୌରୀରେ ତିନୋଟି କୁଣ୍ଡ ଅଛି; କେଦାର କୁଣ୍ଡ; ତାହାର ଦକ୍ଷିଣରେ ମହାବୀର ମନ୍ଦିର ପରେ ଗୌରୀ କୁଣ୍ଡ । ମହାବୀର ମନ୍ଦିର ତଳେ କେଦାର କୁଣ୍ଡରୁ ଗୌରୀ କୁଣ୍ଡକୁ ଜଳ ଆସିବାକୁ ଗୋଟାଏ ମୁଖ ଅଛି; ଗୌରୀ କୁଣ୍ଡର ଦକ୍ଷିଣରେ ବାହାରକୁ ଜଳ ବାହାରି ଯିବାକୁ ଆଉ ଗୋଟିଏ ମୁଖ ଅଛି । ଏହାକୁ ଲୋକେ କହନ୍ତି, ଗୋଟାଏ ଅସୁର ଜଳ ଉଦଗାରୁଛି, ଆଉ ଗୋଟାଏ ଅସୁରୁଣୀ ପିଇ ଦେଉଛି । କେଦାର କୁଣ୍ଡ ଅପେକ୍ଷା ଗୌରୀ କୁଣ୍ଡର ଜଳ ଅତି ପରିଷ୍କାର ଓ ସ୍ନାନ ପକ୍ଷରେ ଅତି ଉତ୍କୃଷ୍ଟ । କେଦାରେଶ୍ୱରସ୍ଥ ଗୌରୀକୁଣ୍ଡ ଆଉ କୁଣ୍ଡର ଜଳ ଅତି ଜୀର୍ଣ୍ଣକାରକ । ଏ ଜଳ ଅତି ନିର୍ମଳ ଓ ଉପାଦେୟ । କେଦାରେଶ୍ୱର ଆଦିଙ୍କ ଭୋଗ ଏ ଜଳରେ ପ୍ରସ୍ତୁତ ହୁଏ ବୋଲି ଏହାର ନାମ ଦୁଗ୍ଧକୁଣ୍ଡ ହୋଇଅଛି ।

ଶିବପୁରାଣର ବର୍ଣ୍ଣନା ଅନୁସାରେ ଦେବୀ ଦେଖା ସ୍ୱହସ୍ତରେ ଗୌରୀଙ୍କୁ ଖନନ କରିଥିଲେ । ବର୍ଷର ଯେ କୌଣସି ମାସର କୃଷ୍ଣପକ୍ଷ ନବମୀ ଦିନ ମଧ୍ୟାହ୍ନରେ କୁଣ୍ଡ ତଳ ସ୍ଥାପନ କରି ଭକ୍ତି ସହକାରେ ଏକବର୍ଷ ଏକୁଣ୍ଡରେ ସ୍ନାନ କଲେ ମନୋରଥ ସିଦ୍ଧ ହୁଏ ।

> ଚନ୍ଦ୍ରଶାଦି ଚ ଯା ଦେବୀ ଗୌରୀନାମ୍ନା ମୁନୀଶ୍ୱର ।
> ସଂଘାରଣ୍ୟଂ ସଖୀ ତ୍ୟ କୁଣ୍ଡଂ ଚକ୍ରେ ମନୋହରଂ ॥
> ତତ୍ର ସାକ୍ଷାତ୍ ସ୍ୱୟଂ ଦେବୀ ଗୌରୀ ତ୍ରୈଲୋକ୍ୟସୁନ୍ଦରୀ ।
> ସ୍ୱହସ୍ତେନୈବାକରୋତ୍ କୁଣ୍ଡଂ ସର୍ବପାପପ୍ରଣାଶନମ୍ ॥
> ରୂପସୌଭାଗ୍ୟଦଂ ସ୍ନାନଂ ପୁଣ୍ୟଂ ସ୍ୱସ୍ତ୍ୟୟନଂ ମହତ୍ ।
> ନବମ୍ୟାଂ କୃଷ୍ଣପକ୍ଷସ୍ୟ ଦତ୍ତ୍ୱା କୁଣ୍ଡତଳାନ୍ ଶିରେ ।
> ସ୍ନାତ୍ୱା ତସ୍ମିନ୍ ମହାକୁଣ୍ଡେ ସମ୍ବତ୍ସରସମାହିତଃ ।
> ଲଭତେ ବାଞ୍ଛିତଂ ତତ୍ର ସର୍ବକାମଫଳପ୍ରଦଂ ॥
>
> ଶିବପୁରାଣଂ ।

ଆହୁରି କପିଳସଂହିତାକାରଙ୍କ ମତରେ ବର୍ଷେ କାଳ ସ୍ନାନ କରିବା ଦୂରର କଥା, ଏହାର ଜଳ ପାନ କଲେ ପୁନର୍ଜନ୍ମ ହୁଏ ନାହିଁ ।

## ଶାନ୍ତି ଦେଉଳ ।

'ଶାନ୍ତି ଦେଉଳ' ବୋଲି ଏ ଦେଉଳର ନାମକରଣ କି ହେତୁରୁ ହୋଇଅଛି, ତାହା ସହଜରେ ନିର୍ଣ୍ଣୟ କରାଯାଇ ନ ପାରେ । ଏ ମନ୍ଦିରର ଶିବଲିଙ୍ଗ ବର୍ତ୍ତମାନ ବିଦ୍ୟମାନ ନାହିଁ, କେବଳ ଶକ୍ତିମାତ୍ର ରହିଅଛି । ଏ ଦେଉଳର ମୁଖ ପଶ୍ଚିମକୁ । ଏ ମନ୍ଦିରର ଦୁଇଟି ଅଂଶ । ଯଥା—ବିମାନ ଓ ଜଗମୋହନ; ଏହା ତ୍ରିରଥ ସପ୍ତରଥ ଦେଉଳ; ବିମାନର ସାତଟି ଭୂମି; ଏହାର ଜାଙ୍ଘ ପର୍ଯ୍ୟନ୍ତ ଭୂମିରେ ପୋତି ହୋଇ ପଡ଼ିଅଛି । ମୋହନର ସମ୍ମୁଖଭାଗରେ ସରଦୋଳର ଊର୍ଦ୍ଧ୍ୱଭାଗରେ ନବଗ୍ରହ ମୂର୍ତ୍ତି ଓ ଗଜଲକ୍ଷ୍ମୀ

ମୂର୍ତ୍ତି; ସରୁ ବଗଡ଼ା କନ୍ଦା, ଖଡ଼ିଆ କନ୍ଦା, ଫୁଲଗଡ଼ିଆ କନ୍ଦା ପ୍ରସ୍ତରରେ ଏ ମନ୍ଦିର ନିର୍ମିତ । ଜଗମୋହନରେ ବାତାୟନ ମଧ୍ୟ ଅଛି । ଏ ମନ୍ଦିରର କାରୁକାର୍ଯ୍ୟ ଅତି ରମଣୀୟ; ମୋହନ ମଧ୍ୟରେ ପଶୁପକ୍ଷିମାନେ ଧାଡ଼ି ଧାଡ଼ି ହୋଇ ରହିଅଛନ୍ତି । ଯଥା—ହଂସ, ହରିଣ, ହସ୍ତୀ ପ୍ରଭୃତି । ତଳବରଣ୍ଡି ଓ ଉପରବରଣ୍ଡି ଉଭୟରେ ଖୋଦିତ ମୂର୍ତ୍ତିମାନ ବିଦ୍ୟମାନ ।

### ବୈତାଳ ଦେଉଳ ।

ବୈତାଳ ଦେଉଳର ଗଠନପ୍ରଣାଳୀ ଭୁବନେଶ୍ବରସ୍ଥ ସମସ୍ତ ମନ୍ଦିରର ଗଠନପ୍ରଣାଳୀଠାରୁ ସମ୍ପୂର୍ଣ୍ଣ ସ୍ବତନ୍ତ୍ର । ଶ୍ରୀଯୁକ୍ତ ମନୋମୋହନ ଗାଙ୍ଗୁଲିଙ୍କ ମତରେ ଏ ସ୍ତରର ଦେଉଳ ଦାକ୍ଷିଣାତ୍ୟ ଅଞ୍ଚଳର ଶିଳ୍ପକଳାର ଅନୁକରଣ ।

* ବୈତାଳ ଦେଉଳର ଆକୃତି ବୋଇତ ପରି ବୋଲି ତାହାର ଏପରି ନାମକରଣ ହୋଇଅଛି । ବୋଇତକଖାରୁ ପରି ଉପର ଅଂଶ ହେବାରୁ ଏପରି ନାମକରଣ ହୋଇଥିବ ବୋଲି ଶ୍ରୀଯୁକ୍ତ ମନୋମୋହନ ଗଙ୍ଗୋପାଧ୍ୟାୟ ମହାଶୟ ଅନୁମାନ କରନ୍ତି, ମାତ୍ର ଯଥାର୍ଥରେ ତାହା ନୁହେ । ଏ ଦେଉଳ ପୂର୍ବମୁଖୀନ, ଏକରଥବିଶିଷ୍ଟ; ସ୍ଥାନୀୟ ଶିଳ୍ପୀମାନଙ୍କ ମତରେ ଏକରଥ ବୋଲି ଦେଉଳ ନାହିଁ; ବୈତାଳ ଦେଉଳକୁ ସେମାନେ ଚଉରସ ଦେଉଳ ବୋଲି କହନ୍ତି । ଏ ଦେଉଳରେ ବ୍ୟବହୃତ ପ୍ରସ୍ତରମାନ ରଙ୍ଗତାଳିମା ଓ ଖଡ଼ିଆ କନ୍ଦା; ଏ ଦେଉଳ ଚଉରସ ହେଲେ ମଧ୍ୟ ତାହା ପଞ୍ଚରଥ ଦେଉଳ ପରି ଦୃଶ୍ୟମାନ ହେଉଅଛି । ଏଥିର ପାଞ୍ଚୋଟି ପଗ, ପ୍ରତ୍ୟେକ ପଗ ପ୍ରସ୍ତରଠାରୁ ସମାନ ଦୂରରେ ସ୍ଥାପିତ; ଜାଙ୍ଘର ବିଭାଗ ଗୃବେଟି, କଣି ନାହିଁ । ବାଡ଼ଟି ଜାଙ୍ଘ ଓ ବରଣ୍ଡିର ସମଷ୍ଟି; ବନ୍ଧନ ନାହିଁ । ବୈତାଳ ଅଂଶରେ (୧) ବୈତାଳପାଦ, (୨) ବୈତାଳମସ୍ତକ ଅଛି । ବୈତାଳ ପାଦରେ ଯୁଦ୍ଧଗାମୀ ହସ୍ତିଯୂଥର ଅଗଣ୍ଡାର

---

* Radhakumud Mukerji—Indian Shipping P. 37.

ଚକ୍ର ପ୍ରଦର୍ଶିତ ହୋଇଅଛି । ବୈତାଳ ମସ୍ତକରେ ଭନୋଟି ଆଁଳା ବସିଅଛି । ଆଁଳା ଉପରେ ତିନୋଟି ତ୍ରିଶୂଳ ।

ବୈତାଳ ଦେଉଳର ଜଗମୋହନ ପରଶୁରାମେଶ୍ୱର ଦେଉଳର ଜଗମୋହନତୁଲ୍ୟ । ପ୍ରଭେଦ ମଧ୍ୟରେ ବୈତାଳ ଦେଉଳର ଚତୁଷ୍କୋଣରେ ଗୃହେଷ୍ଟି ବିଚିତ୍ରରେଖ ଦେଉଳ ବିଦ୍ୟମାନ ।

ବିମାନର ପଶ୍ଚିମ ଦିଗରେ ପାଞ୍ଚୋଟି ପାର୍ଶ୍ୱଦେବତା ସ୍ଥାପିତ, ଏହି ପାଞ୍ଚୋଟି ମଧ୍ୟରୁ ମଧ୍ୟମୂର୍ତ୍ତିଟି ହରପାର୍ବତୀଙ୍କର ଯୁଗଳମୂର୍ତ୍ତି । ଏ ମୂର୍ତ୍ତିର ଗୃହେଷ୍ଟି ହସ୍ତ; ଗୋଟିଏ ହସ୍ତରେ ଗୋଟିଏ ପୁଷ୍ପ, ଅନ୍ୟ ହସ୍ତରେ କମଣ୍ଡଳୁ, ବାମ ହସ୍ତରେ ଦର୍ପଣ ଓ ଅନ୍ୟ ହସ୍ତରେ ପାର୍ବତୀଙ୍କ ପଦନ୍ତ । ଉତ୍ତର ଦିଗରେ ମହିଷମର୍ଦ୍ଦିନୀ ମୂର୍ତ୍ତି ମଧ୍ୟ ଉଲ୍ଲେଖଯୋଗ୍ୟ । ଅଷ୍ଟଭୂଜାମୂର୍ତ୍ତି—ଖଡ୍ଗ, ଢାଲ, ତ୍ରିଶୂଳ, ସର୍ପ, ବର୍ଚ୍ଛା, ଧନୁ, ଶର, କୃପାଣ, ଏହି ଅସ୍ତ୍ରମାନ ହସ୍ତରେ ଧାରଣ କରିଅଛନ୍ତି । ବିମାନର ପୂର୍ବାଂଶ ଅତି ରମଣୀୟ କାରୁକାର୍ଯ୍ୟପୂର୍ଣ୍ଣ ।

ବୈତାଳ ଦେଉଳର କାରୁକାର୍ଯ୍ୟର କୌଣସି କୌଣସି ଚକ୍ର ସହିତ ସାଞ୍ଚି ଏବଂ ବରହୁତ ସ୍ତୂପର ଚକ୍ରର ସାମଞ୍ଜସ୍ୟ ଦେଖି ବୈତାଳ ଦେଉଳରେ ବୌଦ୍ଧ ପ୍ରଭାବ ମନୋମୋହନ ଗାଙ୍ଗୁଲିପ୍ରମୁଖ ଲେଖକମାନେ କଳ୍ପନା କରିଅଛନ୍ତି । ଆଗପଛ ହୋଇ ଯୋଡ଼ାସିଂହ, ପଦ୍ମପୁଷ୍ପର ଅର୍ଦ୍ଧାଂଶ ବା ତ୍ରୁଟାୟାଂଶ ଚକ୍ର ଓ କୁମ୍ଭଗାତ୍ରରେ କାରୁକାର୍ଯ୍ୟ ପ୍ରଭୃତିକୁ ସେ ମହାଶୟ ବୌଦ୍ଧପ୍ରଭାବର ନିଦର୍ଶନ ବୋଲି ସ୍ଥିର କରିଅଛନ୍ତି ।

ବୈତାଳ ଦେଉଳର ଅଧିଷ୍ଠାତ୍ରୀ ଦେବୀ କପାଳିନୀ ଦେବୀ । ଏ ମୂର୍ତ୍ତିଟି ଅତି ଭୟଙ୍କର । ନରକଙ୍କାଳ ପରି ଶରୀର । ଏହାଙ୍କ ମୁଖମଣ୍ଡଳରେ ମାଂସ ନ ଥାଇ ନରକଙ୍କାଳ ପରି ମୁଖ; ଏ ଦେବୀମୂର୍ତ୍ତି ଶବୋପରି ଆସୀନା । ଯେଉଁ ମନ୍ଦିରରେ କପାଳିନୀ ଦେବୀ ଅଧିଷ୍ଠିତା, ସେ ମନ୍ଦିର ମଧ୍ୟରେ ଅନେକଗୁଡ଼ିଏ ଚାମୁଣ୍ଡା ମଧ୍ୟ ରହିଅଛନ୍ତି ।

ହୋଇଅଛି । ବିନ୍ଦୁ ହ୍ରଦ ସମ୍ବନ୍ଧରେ ଗୋଟିଏ କିମ୍ବଦନ୍ତୀ ଅଛି । ବିନ୍ଦୁ ସରୋବରର ପ୍ରତିଷ୍ଠା କାଳରେ ମହାଦେବ ଭାରତବର୍ଷୀୟ ସର୍ବତୀର୍ଥଙ୍କୁ ଆହ୍ୱାନ କରିବାପାଇଁ ବୃଷଭଙ୍କୁ ପ୍ରେରଣ କଲେ । ମହାଦେବଙ୍କର ଉଦ୍ଦେଶ୍ୟ ଥିଲା ଯେ, ଲୋକେ ଭାରତବର୍ଷର ବିଭିନ୍ନ ତୀର୍ଥରେ ସ୍ନାନ କରି ଯେଉଁ ପୁଣ୍ୟ ଅର୍ଜନ କରନ୍ତି, କେବଳ ବିନ୍ଦୁ ହ୍ରଦରେ ସ୍ନାନ କରି ସେହି ଫଳ ପାଇ ପାରିବେ । ସର୍ବତୀର୍ଥମାନଙ୍କ ମଧ୍ୟରୁ ବୃଷଭ କାହାକୁ ମସ୍ତକରେ, କାହାକୁ କଣ୍ଠରେ, କାହାକୁ ବକ୍ଷରେ ଏହିପରି ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗରେ ଆଣିଲା; ଗୋଦାବରୀଙ୍କ ନିକଟରେ ଉପସ୍ଥିତ ହେବା ବେଳକୁ ତାହାର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗରେ ତୀର୍ଥମାନେ ଅଛନ୍ତି; ସେ କହିଲେ, "ମୁଁ କାହିଁରେ ଯିବି ?" ବୃଷଭ ତାର ଖୁରଟି ଦେଖାଇ କହିଲା, ଏଥିରେ ଯିବାକୁ ହେବ । ଏଥିରେ ଗୋଦାବରୀ ବଡ଼ ମର୍ମାହତ ହୋଇ ଆସିଲେ ନାହିଁ । ବୃଷଭ ଅନ୍ୟ ସବୁ ତୀର୍ଥଙ୍କୁ ନେଇ ଆସି ପହଞ୍ଚି ମହାଦେବଙ୍କୁ ସମ୍ବାଦ ଦେଲା; ମହାଦେବ ମଧ୍ୟ ଗୋଦାବରୀଙ୍କର ଦର୍ପ ଦେଖି ବଡ଼ ବିରକ୍ତ ହୋଇ ସଙ୍ଗେ ସଙ୍ଗେ ଅଭିଶାପ ଦେଲେ—"ଯେଉଁ ତୀର୍ଥଜଳ ବିନ୍ଦୁ ହ୍ରଦ ପ୍ରତିଷ୍ଠାରେ ବ୍ୟବହୃତ ହେଲା ନାହିଁ, ତାହା କାଳେ କାଳେ ଅପବିତ୍ର ହୋଇ ରହିବ । ଗୋଦାବରୀ ଏ ଖବର ପାଇ ପୁଣି ଆସି ମହାଦେବଙ୍କ ଶରଣାଗତ ହେଲେ । ମହାଦେବ ପ୍ରସନ୍ନ ହେଲେ ସତ୍ୟ, କିନ୍ତୁ କହିଲେ, "ମୋ କଥା ବ୍ୟର୍ଥ ହେବ ନାହିଁ; ତେବେ ପ୍ରତି ବାର ବର୍ଷରେ ଯେତେବେଳେ ସିଂହ ବୃହସ୍ପତି ପଡ଼ିବ, ସେତେବେଳେ ଗୋଦାବରୀରେ ସ୍ନାନ ଯୋଗ ପଡ଼ିବ ଓ କେବଳ ସେହି ସମୟରେ ଗୋଦାବରୀ ଜଳ ପବିତ୍ର ହେବ ।" ବିନ୍ଦୁ ହ୍ରଦରେ ମଧ୍ୟ ଗୋଦାବରୀଙ୍କ ଲାଗି ଗୋଟିଏ ସ୍ଥାନ ନିର୍ଦ୍ଦିଷ୍ଟ ହେଲା; ସେ ଘାଟର ନାମ ଗୋଦାବରୀ ଘାଟ; ସେ ସ୍ଥାନର ଜଳ ମଧ୍ୟ ସିଂହ ବୃହସ୍ପତି ସମୟରେ ପବିତ୍ର ହୁଏ ।

ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ପ୍ରକୃତ ବିନ୍ଦୁ ହ୍ରଦକୁ ଗୋସାଗର ବୋଲି କଳ୍ପନା କରିଅଛନ୍ତି; କିନ୍ତୁ ସେ ମତ ଭ୍ରାନ୍ତିମୂଳକ । ଗୋସାଗର

ଝିଗୋସାଗରେଶ୍ୱରଙ୍କ ପଶ୍ଚାଦ୍‌ଭାଗରେ ଲିଙ୍ଗରାଜ ମନ୍ଦିରଠାରୁ ପ୍ରାୟ ଏକ ମାଇଲ ଦୂରରେ ଅବସ୍ଥିତ । ଏହି ସାଗରରେ ଗୋପାଳୁଣୀ ବେଶରେ ପାର୍ବତୀ ଗୋମାନଙ୍କୁ ଜଳ ପାନ କରାଉଥିଲେ ।

ଏକାମ୍ର ପୁରାଣର ବର୍ଣ୍ଣନା ଅନୁସାରେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନି ପୁରରୁ ସମସ୍ତ ନଦନଦୀର ଜଳ ଆଣିତ ହୋଇ ଏ ପୁଷ୍କରିଣୀ ପ୍ରତିଷ୍ଠିତ ହୋଇଥିଲା ବୋଲି ଏହାର ନାମ ବିନ୍ଦୁ ହ୍ରଦ ହୋଇଅଛି । ଏକାମ୍ରପୁରାଣ ଅନୁସାରେ ମହାଦେବ ବିନ୍ଦୁ ହ୍ରଦର ପ୍ରତିଷ୍ଠାତା, * କିନ୍ତୁ ଶିବପୁରାଣ ମତରେ ପାର୍ବତୀ ବିନ୍ଦୁ ହ୍ରଦ ସ୍ଥାପନ କରିଥିଲେ । କିନ୍ତୁ ଶିବପୁରାଣରେ ଅନ୍ୟତ୍ର ମଧ୍ୟ ଲିଖିତ ଅଛି, ମହାଦେବ ତାହା ପ୍ରତିଷ୍ଠା କରାଇଥିଲେ । ପଦ୍ମପୁରାଣ ବ୍ରହ୍ମପୁରାଣ ପ୍ରଭୃତି ମତରେ ପାର୍ବତୀଙ୍କ ଅନୁରୋଧରେ ଶିବ ଏ ପୁଷ୍କରିଣୀ ଖନନ କରାଇ-ଥିଲେ । ସେ ଯାହାହେଉ, ପୌରାଣିକ ବୃତ୍ତାନ୍ତମାନ କ୍ଷେତ୍ରମାହାତ୍ମ୍ୟ ବୃଦ୍ଧି ଲାଗି ରଚିତ, ସେଥିର କୌଣସି ଐତିହାସିକ ଭିତ୍ତି ନାହିଁ ।

ପାର୍ବତୀ କୀର୍ତ୍ତି ଓ ବାସ ରାକ୍ଷସଙ୍କ ସହିତ ଯୁଦ୍ଧରେ କ୍ଲାନ୍ତ ହୋଇ ମହାଦେବଙ୍କୁ ଜଳ ମାଗିଲେ । ମହାଦେବ ଯେଉଁ ସ୍ଥାନରେ ତ୍ରିଶୂଳ ମାରି ପାର୍ବତୀଙ୍କୁ ଜଳଦାନ କରିଥିଲେ, ସେହି ସ୍ଥାନରେ ବିନ୍ଦୁହ୍ରଦ ପ୍ରତିଷ୍ଠିତ ହୋଇଅଛି । ଡାକ୍ତର ରାଜେନ୍ଦ୍ରଲାଲ ମିତ୍ରଙ୍କ ମତରେ ହସ୍ତୀଗୁମ୍ଫା ଲିଖିତ ଅନୁଶାସନ ଅନୁସାରେ ଭୁବନେଶ୍ୱର ଐରରାଜାମାନଙ୍କ ରାଜଧାନୀ ଥିଲା; ସେହି ଐରରାଜାମାନଙ୍କ ରାଜତ୍ୱ କାଳରେ ଭୁବନେଶ୍ୱରରେ ବିନ୍ଦୁହ୍ରଦ ପ୍ରତିଷ୍ଠିତ ବୋଲି ସେ ଅନୁମାନ କରିଅଛନ୍ତି; କିନ୍ତୁ ମିତ୍ର ମହାଶୟଙ୍କ ମତ ଏକାବେଳକେ ନିଃସନ୍ଦେହ ନୁହେ । ଯୁଧିଷ୍ଠିର ବିନ୍ଦୁସାଗରରେ ସ୍ନାନ

---

* ତଦ୍‌ବିନ୍ଦବଃ ସ୍ରବନ୍ତ୍ୟେନ ଅବିଛିନ୍ନମହର୍ନିଶଂ । ବରୋର୍ଦ୍ଧାରା ସୁଧାଧାରା ଅକ୍ଷୟାର ସୁଧା ସ୍ମୃତାଃ । ଏକାମ୍ରପୁରାଣ ୨୧ ଅଧ୍ୟାୟ ।

କରିଥିଲେ ବୋଲି କୌଣସି କୌଣସି ମହାଭାରତରେ ଲିଖିତ ହୋଇଅଛି । କିନ୍ତୁ ତାହା ପ୍ରକ୍ଷିପ୍ତ; କେବଳ ମହାଭାରତ ପ୍ରାଚୀନ ଗ୍ରନ୍ଥ, କ୍ଷେତ୍ରମାହାତ୍ମ୍ୟ ବୃଦ୍ଧି କରିବା ଉଦ୍ଦେଶ୍ୟରେ ଏ ପ୍ରସଙ୍ଗ ସେଥିରେ ପ୍ରକ୍ଷିପ୍ତ ହୋଇଅଛି ମାତ୍ର ।

ବିନ୍ଦୁସାଗରର ଦୈର୍ଘ୍ୟ ୧୩୦୦ ଫୁଟ, ପ୍ରସ୍ଥ ୭୦୦ ଫୁଟ । ଏହାର ବହିର୍ଭାଗ ଅଂଶର ଗଭୀରତା ଅନୁସାରେ ଏହାର ହାରାହାରି ଗଭୀରତା ୧୬ ଫୁଟ । ଏଥିର ଚତୁଃପାର୍ଶ୍ୱରେ ପୂର୍ବେ ପାବଚ୍ଛଶ୍ରେଣୀ ନିର୍ମିତ ହୋଇ ଗୋଟିଏ ଅପୂର୍ବାକାର ପଥରବନ୍ଧ ପରି ଦିଶୁଥିଲା । ବର୍ତ୍ତମାନ ବହିର୍ଭାଗ ସ୍ଥଳରେ ଏହା ଭଗ୍ନ ହୋଇ ଯାଇଅଛି । ଏହାର ମଧ୍ୟଦେଶସ୍ଥ ଦ୍ୱୀପଖଣ୍ଡର ଦୈର୍ଘ୍ୟ ୧୧୦ ଫୁଟ ଓ ପ୍ରସ୍ଥ ୧୦୦ ଫୁଟ ମାତ୍ର । ଏହା ଉପରେ ଗୋଟିଏ କ୍ଷୁଦ୍ର ମଣ୍ଡପ ଅଛି । ଚନ୍ଦନଯାତ୍ରା ସମୟରେ ଲିଙ୍ଗରାଜଙ୍କ ଚଳନ୍ତି ପ୍ରତିମା ଗୃହରେ ଏଠାକୁ ବିଜେ କରନ୍ତି । ବିନ୍ଦୁହ୍ରଦର ପଙ୍କୋଦ୍ଧାର ନ ହେବାରୁ ତାହା କ୍ରମେ ପଙ୍କିଳ ଓ ଅବ୍ୟବହାର୍ଯ୍ୟ ହେଉଅଛି ।

ବିନ୍ଦୁସରୋବରର ପୂର୍ବଦିଗରେ ଦ୍ୱାରବାସିନୀ ମନ୍ଦିର ଭଗ୍ନଦଶାପନ୍ନ । ଦ୍ୱାରବାସିନୀ ମୂର୍ତ୍ତି ମଧ୍ୟ ଭଗ୍ନ ହୋଇଅଛି । ଏ ମୂର୍ତ୍ତି ଦଶଭୁଜା; କିନ୍ତୁ ଏହାଙ୍କର ଅନେକଗୁଡ଼ିଏ ହାତ ଛିଣ୍ଡିଗଲାଣି । ବିନ୍ଦୁସରୋବରର ଉତ୍ତର-ଦିଗରେ ଉତ୍ତରେଶ୍ୱର ମନ୍ଦିର । ଉତ୍ତରେଶ୍ୱର ମନ୍ଦିରର ବିମାନରେ ମହା-ଦେବଙ୍କର ଲିଙ୍ଗମୂର୍ତ୍ତି ଅବସ୍ଥିତ । ଜଗମୋହନ ମଧ୍ୟରେ ଉତ୍ତରାୟଣୀ ଦେବୀ; ଉତ୍ତରାୟଣୀଙ୍କର ଚତୁର୍ଭୁଜ; ଉତ୍ତରାୟଣୀଙ୍କର ସମ୍ମୁଖରେ କାଳଭୈରବ ମୂର୍ତ୍ତି; ଏ ମୂର୍ତ୍ତି ଯଥାର୍ଥରେ ଭୈରବ । ଗଳାରେ ନରମୁଣ୍ଡମାଳ ଲମ୍ବିତ; ପାଦ-ତଳେ ଶବ, ଦକ୍ଷିଣହସ୍ତରେ ଖଡ୍ଗ; ବାମହସ୍ତରେ ନରମୁଣ୍ଡ; ଦକ୍ଷିଣପାର୍ଶ୍ୱର ଊର୍ଦ୍ଧ୍ୱହସ୍ତ ଭଗ୍ନ ହୋଇଅଛି; ବାମପାର୍ଶ୍ୱର ଊର୍ଦ୍ଧ୍ୱହସ୍ତରେ ଖପର, ମସ୍ତକ ଉପରେ ବୃଷଭ ମସ୍ତକ । ଜଗମୋହନରେ ନୃସିଂହ ଓ ହରପାର୍ବତୀ ମୂର୍ତ୍ତିମାନ ମଧ୍ୟ ସ୍ଥାପିତ ଓ ପୂଜିତ ହେଉଅଛନ୍ତି । ଏହା ଶ୍ମଶାନପୀଠ ବୋଲି ପରିଚିତ ।

ବିନ୍ଦୁସାଗରର ପୂର୍ବରେ ଅନନ୍ତ ବାସୁଦେବ ଓ ବ୍ରହ୍ମା ମନ୍ଦିର ଆଧ ପୂର୍ବକୁ ଆଲୋଚିତ ହୋଇଅଛି । ଦକ୍ଷିଣଧାରରେ ଭୃବାନୀଶଙ୍କର ମନ୍ଦିର ଓ ମୋହିନୀ ଠାକୁରାଣୀ ମନ୍ଦିର । ବିନ୍ଦୁସାଗରର ପଶ୍ଚିମରେ ପଶ୍ଚିମେଶ୍ୱର, ମାକଣ୍ଡେଶ୍ୱର ।

ବିନ୍ଦୁସରୋବରର ମାହାତ୍ମ୍ୟ ଏକାମ୍ର ପୁରାଣ, କପିଳସଂହିତା, ଶିବ-ପୁରାଣ ପ୍ରଭୃତିରେ ଦୃଷ୍ଟ ହୁଏ । କପିଳସଂହିତାରେ କଥିତ ଅଛି, ବିନ୍ଦୁ-ସରୋବରର ଜଳପାନ କଲେ ବା ତନ୍ମଧ୍ୟରେ ସ୍ନାନ କଲେ ମାନବର ଆଉ ନରକ ଭୟ ନ ଥାଏ । ବିନ୍ଦୁସରୋବର ତୁଲ୍ୟ ତୀର୍ଥ ତ୍ରିଭୁବନରେ ନାହିଁ । ଏହାର ଜଳ ଅମୃତ; ଏଥିରେ ସ୍ନାନ କରି ବୃଷଭଧ୍ୱଜ ମହାଦେବଙ୍କୁ ଦର୍ଶନ କଲେ ମାନବ ସର୍ବପାପବିମୁକ୍ତ ହୋଇ ଶିବଦେହରେ ଲୀନ ହୁଏ । *

---

ଏକାମ୍ରପୁରାଣ—* ମାହାତ୍ମ୍ୟଂ ତସ୍ୟ ବକ୍ଷ୍ୟାମି ପୁଣ୍ୟଂ ବିନ୍ଦୁହ୍ରଦସ୍ୟ ଚ ।
ଶୃଣ୍ୱନ୍ତୁ ତ୍ରିଦଶାଃ ସର୍ବେ ତ୍ୱଂ ଚ ଶଙ୍କରବଲ୍ଲଭେ ।
ତ୍ରୈଲୋକ୍ୟେ ଯାନି ତୀର୍ଥାନି ପୁଣ୍ୟକ୍ଷେତ୍ରାଣି ଚ ।
କାନ୍ତାରବନନଦ୍ୟଶ୍ଚ ଗିରୟଶ୍ଚ ସରସ୍ତୁପାଃ ॥
ସର୍ବଂସି ହ୍ରଦକୂପାନି ନିର୍ଝରାଃ ସାଗରାଃ ସ୍ମୃତାଃ ।
ଗଙ୍ଗାଦ୍ୟାଃ ସରିତଃ ସର୍ବାଃ କ୍ଷିରୋଦାଦ୍ୟର୍ଣ୍ଣବାସ୍ତଥା ।
ସ୍ରବନ୍ତ୍ୟ ଯତ୍ର ବୈ ସର୍ବେ ବିନ୍ଦୁଜାଳକରୂପିଣଃ ।
ବିନ୍ଦୁଃ ସ୍ରବତି ବିଶ୍ୱସ୍ୟ ତେନ ବିନ୍ଦୁସରଃ ସ୍ମୃତଂ ।
ନ ତେନ ସଦୃଶଂ କିଞ୍ଚିତ୍ ପୁଣ୍ୟତୀର୍ଥମୁଦାହୃତଂ ॥

କପିଳସଂହିତା { ଏକାମ୍ରକାନନେ ଦିବ୍ୟ ସ୍ତୀର୍ଥ ବିନ୍ଦୁସରଃ ସ୍ମୃତଂ ।
ତତ୍ର ସ୍ନାତ୍ୱା ଚ ପୀତ୍ୱା ଚ ନ ନରଂ ନରକଂ ବ୍ରଜେତ୍ ।

ଭୁବନେଶ୍ୱର ।

## (ଖ) ପାପନାଶିନୀ ।

ଲିଙ୍ଗରାଜ ମନ୍ଦିରର ପଶ୍ଚାତ୍ ଦିଗରେ ଯମେଶ୍ୱରଙ୍କ ପୂର୍ବରେ ପାପନାଶିନୀ ଅବସ୍ଥିତ । ଏ ପୁଷ୍କରିଣୀର ତଟରେ ମୈତ୍ରେଶ୍ୱର ଓ ବରୁଣେଶ୍ୱର ମହାଦେବ ମନ୍ଦିରଦ୍ୱୟ ଅବସ୍ଥିତ । ଏ ପୁଷ୍କରିଣୀର ଜଳ ବର୍ତ୍ତମାନ ଏପରି ଅପରିଷ୍କୃତ ହୋଇଅଛି, ଯଥାର୍ଥରେ ଏଥିରେ ସ୍ନାନ କଲେ ଶରୀର ମନ ଘୋର ଅନୁତାପାନଳରେ ଦଗ୍ଧ ହୋଇ ପାପ ନାଶ ହୋଇଯିବ ।

## (ଗ) ଗଙ୍ଗା ଯମୁନା ।

ଲିଙ୍ଗରାଜ ମନ୍ଦିରର ଦକ୍ଷିଣ ପୂର୍ବାଂଶରେ ଅବସ୍ଥିତ । ଏହା ଗୋଟିଏ କ୍ଷୁଦ୍ର ଜଳପ୍ରପାତ ମାତ୍ର ।

## (ଘ) କୋଟିତୀର୍ଥ ।

ଲିଙ୍ଗରାଜ ମନ୍ଦିରରୁ କେଦାରଗୌରୀ ଯିବା ବାଟରେ ପଡ଼ିବ । ଏହାର କୂଳରେ କୋଟିତୀର୍ଥେଶ୍ୱର ମହାଦେବଙ୍କ ମନ୍ଦିର ଭଗ୍ନଦଶାରେ ବର୍ତ୍ତମାନ ରହିଅଛି । କୋଟିତୀର୍ଥେଶ୍ୱର ମନ୍ଦିରର ପଶ୍ଚାତ୍ ବା ପୂର୍ବ ଦିଗରେ ଏ କୁଣ୍ଡ ବିଦ୍ୟମାନ । କୋଟିତୀର୍ଥେଶ୍ୱର ମନ୍ଦିରର ମୁଖ ପଶ୍ଚିମ ଦିଗକୁ, ଏ କୁଣ୍ଡର ଜଳ ବର୍ତ୍ତମାନ କାଳବର୍ଣ୍ଣ ହୋଇ ଅପରିଷ୍କୃତ ରହିଅଛି ।

## ( ଙ )—( ଜ )

ବ୍ରହ୍ମେଶ୍ୱର ସମୀପରେ ବ୍ରହ୍ମକୁଣ୍ଡ, ମେଘେଶ୍ୱର ନିକଟରେ ମେଘତୀର୍ଥ, ଅଲାବୁକେଶ୍ୱର ନିକଟରେ ଅଲାବୁତୀର୍ଥ ଓ ରାମେଶ୍ୱର ସମୀପରେ ରାମହ୍ରଦ ବା ଅଶୋକ କୁଣ୍ଡ; ଏହା ଆମ୍ଭେମାନେ ପୂର୍ବରୁ ଉଲ୍ଲେଖ କରିଅଛୁଁ ।

## (ଜ) ଦେବୀପାଦହରା ।

ଦେବୀପାଦହରାର ଅପର ନାମ ସହସ୍ରଲିଙ୍ଗ ପୁଷ୍କରଣୀ । ଲିଙ୍ଗରାଜ ମନ୍ଦିରର ଉତ୍ତର ପୂର୍ବରେ ବର୍ତ୍ତମାନ ମନ୍ଦିର ଅଫିସ ନିକଟରେ ଏ ପୁଷ୍କରଣୀ ଅବସ୍ଥିତ । ଏହାର ଚତୁଃପାର୍ଶ୍ୱରେ ୧୦୮ ସଂଖ୍ୟକ କ୍ଷୁଦ୍ର ମନ୍ଦିର ବିରାଜିତ ଥିଲା, ତାହାର ଚିହ୍ନ ବର୍ତ୍ତମାନ ରହିଅଛି; ୧୦୮ ମନ୍ଦିର ମଧ୍ୟରୁ ୩୧ ଗୋଟି ଭଗ୍ନ ହୋଇଅଛି ଓ ୭୭ ଗୋଟି ବିଦ୍ୟମାନ ରହିଅଛି । ଅନେକ ମନ୍ଦିରର ଲିଙ୍ଗ ଅପସାରିତ ହୋଇଅଛି । ଏହାର ଜଳ ମଧ୍ୟ ଅପରିଷ୍କାର ହୋଇଅଛି । ପୂର୍ବେ ଆମ୍ଭେମାନେ ଦେବୀଙ୍କ କର୍ତ୍ତୃକ କୀର୍ତ୍ତି ଓ ବାସ ରାକ୍ଷସବଧପ୍ରସଙ୍ଗ ଆଲୋଚନା କରିଅଛୁଁ । ଦେବୀଙ୍କ ପାଦଭରରେ ଭୂଖଣ୍ଡସ୍ଥାନର ନିମ୍ନଦେଶ ଜଳାଶୟରେ ପରିଣତ ହୋଇଥିବାରୁ ଏ ପୁଷ୍କରଣୀର ନାମ 'ଦେବୀପାଦହରା' ହୋଇଅଛି ।

## (ଝ) ଗୋସାଗର ।

ଲିଙ୍ଗରାଜ ମନ୍ଦିରଠାରୁ ଉତ୍ତର ଦିଗରେ ପ୍ରାୟ ଅର୍ଦ୍ଧକ୍ରୋଶ ଦୂରରେ ଗୋସାଗର ଓ ଗୋସାଗରେଶ୍ୱର ଅବସ୍ଥିତ । ଗୋସାଗରେଶ୍ୱର ମନ୍ଦିରରେ ବିଶେଷ କୌଣସି କାରୁକାର୍ଯ୍ୟ ନାହିଁ । ଗୋସାଗର ଗୋଟିଏ କ୍ଷୁଦ୍ର ବାପୀ ତୁଲ୍ୟ ।

# ଅଷ୍ଟମ ଅଧ୍ୟାୟ ।

## ଭୁବନେଶ୍ୱରର ସ୍ଥାପତ୍ୟ ଓ ମୂର୍ତ୍ତିତତ୍ତ୍ୱ ।

ଶିଳ୍ପସମାଲୋଚକ ଜନ୍ ରସ୍କିନ୍ ଶିଳ୍ପକଳାକୁ ପ୍ରଧାନତଃ ପାଞ୍ଚଭାଗରେ ବିଭକ୍ତ କରିଅଛନ୍ତି । ଯଥା—ଭକ୍ତିସୂଚକ, ସ୍ମୃତିରକ୍ଷକ, ରାଜକୀୟ, ସୈନ୍ୟବିଭାଗୀୟ, ଗାର୍ହସ୍ଥ୍ୟ । ପୁରୀ ଭୁବନେଶ୍ୱର କୋଣାର୍କ ମନ୍ଦିରମାନ, ଜୁମା ମସଜିଦ ପ୍ରଭୃତି ପ୍ରଥମ ଶ୍ରେଣୀର; ତାଜମହଲ, ଭିକ୍ଟୋରିଆ ମେମୋରିଅଲ ହଲ ପ୍ରଭୃତି ଦ୍ୱିତୀୟ ଶ୍ରେଣୀର; ଦେଓଆନଖାସ,ଦେଓଆନଆମ ପ୍ରଭୃତି ତୃତୀୟ ଶ୍ରେଣୀର; ଦିଲ୍ଲୀ ଦୁର୍ଗ, ଚୁନାର ଦୁର୍ଗ, ବାରବାଟୀ ଦୁର୍ଗ ପ୍ରଭୃତି ଚତୁର୍ଥ ଶ୍ରେଣୀର; ସିସମହଲ, ବେଲଭେଡ଼ିଅର ପାଲେସ ପ୍ରଭୃତି ପଞ୍ଚମ ଶ୍ରେଣୀର ଅନ୍ତର୍ଗତ । ଉତ୍କଳରେ ବର୍ତ୍ତମାନ କେବଳ ପ୍ରଥମଶ୍ରେଣୀର ଶିଳ୍ପକଳା ଆମ୍ଭମାନଙ୍କର ଦୃଷ୍ଟିଗୋଚର ହେଉଅଛି; ଅନ୍ୟମାନ କାଳର କରାଳ କବଳରେ ବିଧ୍ୱସ୍ତ ହୋଇଅଛି ।

ପ୍ରଧାନ ବ୍ରାହ୍ମଣ୍ୟ ଶିଳ୍ପ କଳା ତିନିଭାଗରେ ବିଭକ୍ତ; ଯଥା—ଦ୍ରାବିଡ଼ୀୟ, ଚାଲୁକ୍ୟ, ହିନ୍ଦୁଆର୍ଯ୍ୟଜାତୀୟ ( Indo Anyan ) । ଦ୍ରାବିଡ଼ୀୟ ସ୍ଥାପତ୍ୟର ପ୍ରଧାନ ଲକ୍ଷଣ, ଏ ଶ୍ରେଣୀର ଦେଉଳମାନଙ୍କର ଭୂମି ଆୟତାକାର ଓ ଊର୍ଦ୍ଧ୍ୱାଂଶ ପିରାମିଡ଼ ଆକୃତିବିଶିଷ୍ଟ; ଚାଲୁକ୍ୟ ସ୍ଥାପତ୍ୟରେ ଭୂମି ଅଂଶ 'ତାରା'କୃତି, ଊର୍ଦ୍ଧ୍ୱାଂଶ ପିରାମିଡ଼ ତୁଲ୍ୟ; ହିନ୍ଦୁଆର୍ଯ୍ୟଜାତୀୟ ସ୍ଥାପତ୍ୟରେ ଭୂମି ଅଂଶ ସମଚତୁଷ୍କୋଣବିଶିଷ୍ଟ ଓ ଊର୍ଦ୍ଧ୍ୱାଂଶ କୁଟିଳ ରେଖାଯୁକ୍ତ । ଦ୍ରାବିଡ଼ୀୟ ଓ ଚାଲୁକ୍ୟ ସ୍ଥାପତ୍ୟ ଦାକ୍ଷିଣାତ୍ୟରେ ଏବଂ ହିନ୍ଦୁଆର୍ଯ୍ୟଜାତୀୟ ସ୍ଥାପତ୍ୟ ହିନ୍ଦୁସ୍ଥାନ ଓ ଆର୍ଯ୍ୟାବର୍ତ୍ତରେ ବିଶେଷ ଦେଖାଯାଏ । ଓଡ଼ିଶାର ସ୍ଥାପତ୍ୟ ପ୍ରଧାନତଃ ହିନ୍ଦୁଆର୍ଯ୍ୟଜାତୀୟ ଶ୍ରେଣୀର ।

ଓଡ଼ିଶାର ମନ୍ଦିରମାନଙ୍କର ଏହି ବିଶେଷତ୍ୱ ଲକ୍ଷିତ ହୁଏ । ପ୍ରାୟ ସମସ୍ତ ଦେଉଳରେ ଦୁଇଟି ଅଂଶ; ଯଥା—ବିମାନ ଓ ଜଗମୋହନ । ଜଗମୋହନ ଓ ବିମାନ ଉଭୟ ସମଚତୁଷ୍କୋଣବିଶିଷ୍ଟ । ପୁରୀ ଓ ଭୁବନେଶ୍ୱରର ଅନେକ ମନ୍ଦିରରେ ନାଟମନ୍ଦିର ଓ ଭୋଗମନ୍ଦିର ଅଛି । କୌଣସି କୌଣସି ମନ୍ଦିରର ଅଦୌ ପୀଠ ( plinth ) ନାହିଁ । ଓଡ଼ିଶାର ମନ୍ଦିରମାନଙ୍କର ବିଭିନ୍ନାଂଶ ଆମ୍ଭେମାନେ ଏଥି ପୂର୍ବରୁ ଆଲୋଚନା କରିଅଛୁଁ, ପୁନରୁକ୍ତି ନିଷ୍ପ୍ରୟୋଜନ ।

ଉତ୍କଳୀୟ ସ୍ଥାପତ୍ୟ ଓ ମୂର୍ତ୍ତି ନିର୍ମାଣ ଆଦି ପ୍ରସଙ୍ଗରେ ସୁଦ୍ଧା କୌଣସି କୌଣସି ଇଉରୋପୀୟ ପଣ୍ଡିତ ଓ ସେମାନଙ୍କ ଶିଷ୍ୟ କୌଣସି କୌଣସି ଭାରତୀୟ ଲେଖକ ଗ୍ରୀକ୍ ପ୍ରଭାବର ଆଲୋଚନା କରିଅଛନ୍ତି । କିନ୍ତୁ ଆମ୍ଭେମାନେ ଏ ପ୍ରସଙ୍ଗରେ କେବଳ ଡାକ୍ତର ଗୁଷ୍ଟାଭ୍‌ଲେବିଙ୍କ ମତ ଉଦ୍ଧାର କଲେ ସେ ସମସ୍ତ ଯୁକ୍ତିର ଅସାରତା ପ୍ରତିପାଦିତ ହେବ । ସେ ମହାଶୟ ଲେଖିଅଛନ୍ତି—"ଗ୍ରୀକ୍ ସଭ୍ୟତା ସହିତ ଦୀର୍ଘକାଳ ସଂଯୋଜିତ ହୋଇ ସୁଦ୍ଧା ଭାରତବର୍ଷ ଶିଳ୍ପ ବିଷୟରେ ଗ୍ରୀକ୍‌ଠାରୁ କୌଣସି ଋଣ ଗ୍ରହଣ କରି ନାହିଁ । ଯେଉଁଠାରେ ଉଭୟ ଜାତି ମଧ୍ୟରେ ଘୋର ଧାତୁଗତ ବୈଷାଦୃଶ୍ୟ, ସେଠାରେ ଅନୁକର୍ଷ । ବା ଋଣ ଗ୍ରହଣ କୌଣସି ପ୍ରକାରେ ସମ୍ଭବ ନୁହେ । ଯେଉଁମାନଙ୍କର ଚିନ୍ତାସ୍ରୋତ ବିଭିନ୍ନ ଦିଗରେ ପ୍ରବାହିତ ଏବଂ ଶିଳ୍ପ ପ୍ରତିଭା ମଧ୍ୟ ସୁସମଞ୍ଜସ ହେବାର ନୁହେ, ସେମାନେ କିପରି ପରସ୍ପରକୁ ପ୍ରଭାବାନ୍ୱିତ କରିବାକୁ ସମର୍ଥ ହେବେ ? ହିନ୍ଦୁ ପ୍ରତିଭାର ଏପରି ବିଶେଷତ୍ୱ ଯେ, ଯେତେବେଳେ ହିନ୍ଦୁମାନେ କୌଣସିଠାରୁ ଅନୁକରଣ କରିଅଛନ୍ତି, ତାହାକୁ ନିଜସ୍ୱରେ ରୂପାନ୍ତରିତ କରି ନେଇଅଛନ୍ତି ।" ଡାକ୍ତର ଲେବି ଓଡ଼ିଶାର ଶିଳ୍ପ ଓ ସ୍ଥାପତ୍ୟ ସମ୍ବନ୍ଧରେ ଯଥେଷ୍ଟ ଆଲୋଚନା କରିଅଛନ୍ତି; ସୁତରାଂ ଭାରତର ଅନ୍ୟାନ୍ୟ ଅଂଶ ଅପେକ୍ଷା ଉତ୍କଳ ପ୍ରତି ତାହାଙ୍କର ମନ୍ତବ୍ୟ ବିଶେଷ ଭାବରେ ପ୍ରଯୁଜ୍ୟ ।

ଭୁବନେଶ୍ୱର ।

ଉଦ୍ଭାବନତା ଭାରତୀୟ ଶିଳ୍ପର ବିଶେଷତ୍ୱ । ଭାରତୀୟ ଶିଳ୍ପକରମାନେ କୌଣସି ମନ୍ଦିର ନିର୍ମାଣ କାଳରେ ତାହାକୁ ଦେବଭୋଗ୍ୟ କରିବାକୁ ନିୟତ ଚେଷ୍ଟିତ ହେଉଥିଲେ । ସୁତରାଂ ମନ୍ଦିରର ପାଦଦେଶରୁ ଶିଖର ପର୍ଯ୍ୟନ୍ତ ବିବିଧ ସୂକ୍ଷ୍ମ କାରୁକାର୍ଯ୍ୟଦ୍ୱାରା ସୁଶୋଭିତ କରୁଥିଲେ । କାହାର କାହାର ମତରେ ହିନ୍ଦୁମାନେ ବହିର୍ଜଗତର ଅସ୍ତିତ୍ୱରେ ସୁଦ୍ଧା ବିଶ୍ୱାସ କରୁ ନ ଥିଲେ, ସୁତରାଂ ଶିଳ୍ପକଳାରେ ଉତ୍କର୍ଷ ଲାଭ କରିବାର ପ୍ରେରଣା ସେମାନଙ୍କଠାରେ ନ ଥିଲା । "ସୁନ୍ଦର ସୁକଳ୍ପିତ ନରନାରୀ ମୂର୍ତ୍ତି, ଜୀବଜନ୍ତୁ ବା ଲତାପତ୍ରର ଚିତ୍ର, ନାନାବିଧ ଗାର୍ହସ୍ଥ୍ୟ ଚିତ୍ର, ଆପାତ ଦୃଷ୍ଟିରେ ଧର୍ମସମ୍ପର୍କବର୍ଜିତ ଓ ସର୍ବବିଧ ଶିଳ୍ପକଳାର ଆଦର୍ଶଭୂତ; ଉତ୍କଳୀୟ ଦେବମନ୍ଦିର ଭିନ୍ନ ଅନ୍ୟ କୌଣସିଠାରେ ଏଗୁଡ଼ିକର ଏପରି ପାରିପାଟ୍ୟ ଦେଖାଯାଏ ନାହିଁ । ଯେଉଁ ଭାରତବାସିମାନଙ୍କର ଧର୍ମ ଓ ଭଗବଦ୍‌ଭକ୍ତିର ନିଦର୍ଶନସ୍ୱରୂପ ସହସ୍ର ସହସ୍ର ମନ୍ଦିରଚୂଡ଼ା ଅଦ୍ୟାପି ଉନ୍ନତଶିର ହୋଇ ଦଣ୍ଡାୟମାନ ରହିଅଛି, ଅଦ୍ୟାପି ଅସଂଖ୍ୟ ଦେବମନ୍ଦିର ଓ ସ୍ତୂପର ଭଗ୍ନାବଶେଷ ସୁଦ୍ଧା ଯେଉଁ ଜାତିର କାରୁକାର୍ଯ୍ୟ ଓ ଅପୂର୍ବ ଶିଳ୍ପକୌଶଳର ସାକ୍ଷ୍ୟ ଦେଉଅଛି, ସୌନ୍ଦର୍ଯ୍ୟ ବିଷୟରେ ସେମାନଙ୍କର ପ୍ରେରଣା ନ ଥିଲା, ଏହା ସହଜରେ ବୋଲି ଯାଇ ନ ପାରେ ।

## ଅଷ୍ଟସଖୀ ମୂର୍ତ୍ତି ।

ଭୁବନେଶ୍ୱରର କୌଣସି କୌଣସି ମନ୍ଦିରରେ ଯେଉଁ ଅଷ୍ଟସଖୀ ମୂର୍ତ୍ତି ଦୃଷ୍ଟ ହୁଏ, ସେଗୁଡ଼ିକର ଆଦି ନିର୍ଣ୍ଣୟ ସହଜ ନୁହେ । କୃଷ୍ଣଙ୍କର ଅଷ୍ଟପାଟବଂଶୀ ବା ଅଷ୍ଟସଖୀ ଥିଲେ ବୋଲି ପୁରାଣମାନଙ୍କରୁ ଜଣାଯାଏ; କିନ୍ତୁ ଏ ଅଷ୍ଟସଖୀଙ୍କ ସହିତ ସେଥିର କୌଣସି ସମ୍ବନ୍ଧ ଥିଲା ପରି ବୋଧ ହୁଏ ନାହିଁ । ଏ ଅଷ୍ଟସଖୀ ମୂର୍ତ୍ତିମାନ ସାଧାରଣତଃ ବରଣ୍ଡି ଉପରେ ଥାଏ । ଏଗୁଡ଼ିକୁ ସ୍ଥାନୀୟ ଶିଳ୍ପକର ଓ ସେବକମାନେ ଅଷ୍ଟସଖୀ ବୋଲି କହୁଥିଲେ ମଧ୍ୟ ଯଥାର୍ଥରେ ଏଗୁଡ଼ିକ ଅଷ୍ଟ ଶକ୍ତି । ଅଗ୍ନି ପୁରାଣର ଛବିଶ ଅଧ୍ୟାୟରେ ଅଷ୍ଟଶକ୍ତି ବୃତ୍ତାନ୍ତ ଦୃଷ୍ଟ ହୁଏ ।

ଏହି ଶକ୍ତିମାନଙ୍କର ମଧ୍ୟ ଆଠଟି ଲେଖାଏ ଉପଶକ୍ତି ଅଛନ୍ତି । ଏଗୁଡ଼ିକୁ ଅଷ୍ଟାଷ୍ଟକ ଶକ୍ତି ବୋଲାଯାଏ । ସାରନାଥଠାରେ ମଧ୍ୟ ଜେନେରେଲ୍ କନ୍ନିଂହାମ୍ ଏହିପରି କେତେଗୁଡ଼ିଏ ଅଷ୍ଟଶକ୍ତି ମୂର୍ତ୍ତି ଆବିଷ୍କାର କରିଥିଲେ ।

## ନାଗ ନାଗିଣୀ ।

ଓଡ଼ିଶାର ମନ୍ଦିରମାନଙ୍କରେ ଅନେକ ସ୍ଥଳରେ ନାଗ ନାଗିଣୀ ମୂର୍ତ୍ତି ଦୃଷ୍ଟ ହୁଏ । ନାଗ ନାଗିଣୀ ମୂର୍ତ୍ତିଗୁଡ଼ିକ କେବଳ ଯେ ବ୍ରାହ୍ମଣ୍ୟ ଧର୍ମର ଅନ୍ତର୍ଗତ, ତାହା ନୁହେ । ବୌଦ୍ଧଧର୍ମର ଧର୍ମଗ୍ରନ୍ଥମାନଙ୍କରେ ମଧ୍ୟ ଏଥିର ଉଲ୍ଲେଖ ଦେଖାଯାଏ । କନକ ପଗ, ଅନର୍ଥ ପଗ, ଦ୍ୱାରବନ୍ଧ, ଜଗମୋହନର ଖିଲାସ୍ତମ୍ଭମାନଙ୍କରେ ନାଗ ନାଗିଣୀ ମୂର୍ତ୍ତି ସାଧାରଣତଃ ଖୋଦିତ । ଅଗ୍ନିପୁରାଣର ବର୍ଣ୍ଣନା ଅନୁସାରେ ନାଗମାନେ ଅଷ୍ଟକୁଳବିଶିଷ୍ଟ ।

ଅନନ୍ତୋ ବାସୁକିଃ ପଦ୍ମୋ ମହାପଦ୍ମଶ୍ଚ ତକ୍ଷକଃ।
କୁଳୀରଃ କର୍କଟଃ ଶଙ୍ଖୋ ହ୍ୟଷ୍ଟୌନାଗାଃ ପ୍ରକୀର୍ତ୍ତିତାଃ ।

ହିନ୍ଦୁ ଗ୍ରନ୍ଥମାନଙ୍କରେ ନାଗନାଗିଣୀପ୍ରସଙ୍ଗ ଦୃଷ୍ଟ ହେଉଥିଲେ ମଧ୍ୟ ବୌଦ୍ଧଯୁଗରେ ନାଗପୂଜା ପ୍ରତିଷ୍ଠା ଲାଭ କରିଥିଲା । ବୌଦ୍ଧଗ୍ରନ୍ଥ ଅନୁସାରେ ନାଗମାନଙ୍କୁ ଦେବତାମାନଙ୍କ ପରେ ସ୍ଥାନ ଦିଆଯାଇଅଛି; ଯଥା—ଦେବ, ନାଗ, ରାକ୍ଷସ, ଗନ୍ଧର୍ବ, ଅସୁର, ଗରୁଡ଼, କିନ୍ନର, ମହୋରଗ । ଓଡ଼ିଶାର ମନ୍ଦିରମାନଙ୍କରେ ସ୍ଥାନେ ସ୍ଥାନେ ନାଗକନ୍ୟାମାନଙ୍କର ମୂର୍ତ୍ତି ମଧ୍ୟ ଖୋଦିତ ହୋଇଥିବାର ଦେଖାଯାଏ ।

## ଶାର୍ଦ୍ଦୂଳ ।

ଶାର୍ଦ୍ଦୂଳ ପ୍ରତିମୂର୍ତ୍ତି ତିନିଶ୍ରେଣୀରେ ବିଭକ୍ତ;—ଓଲଟା ଗଜବିଡ଼ାଳସିଂହ, ଓଲଟା ଗଜସିଂହ, ଛିଡ଼ାଉଡ଼ା ଗଜସିଂହ । ପ୍ରଥମ ଶ୍ରେଣୀର ଶାର୍ଦ୍ଦୂଳ ବା

ଭୁବନେଶ୍ୱର ।

ଚିତ୍ର କନକପଗ ଓ ଅନର୍ଥପଗ ମଧରେ ଦୃଷ୍ଟ ହୁଏ । ଦ୍ୱିତୀୟ ଶ୍ରେଣୀର ଶାର୍ଦ୍ଦୂଳ ବା ସିଂହ ଅନର୍ଥପଗ ଓ ବାହ୍ୟପଗ ମଧରେ ଦୃଷ୍ଟ ହୁଏ; ବିମାନ ବା ଜଗମୋହନର ବହିର୍ଦ୍ଦେଶରେ ନ ଥାଇ ଉଭୟଙ୍କୁ ପୃଥକ୍ କରି ରହିଥିବା ସ୍ଥାନରେ ନିର୍ମିତ ।

ଏତଦ୍‌ବ୍ୟତୀତ ମର୍କଟ, ମକର, ଅଶ୍ୱ, ମାନବ ମୂର୍ତ୍ତିମାନ ମଧ ଦର୍ଶନୀୟ ଓ ଉଲ୍ଲେଖଯୋଗ୍ୟ, ଲିଙ୍ଗରାଜମନ୍ଦିରର ବୃଷଭ ମୂର୍ତ୍ତି ଓ କୀର୍ତ୍ତିମୁଖ ପ୍ରସଙ୍ଗ ଆମ୍ଭେମାନେ ଯଥାସ୍ଥାନରେ ଉଲ୍ଲେଖ କରିଅଛୁଁ ।

ଜୀବଜନ୍ତୁ ପ୍ରତିମୂର୍ତ୍ତି ଭିନ୍ନ ମନ୍ଦିରମାନଙ୍କରେ ବିଶେଷତଃ ଦ୍ୱାରବନ୍ଧ ପ୍ରଭୃତିରେ ପୁଷ୍ପ, ଲତା ଆଦିର ସୂକ୍ଷ୍ମ କାରୁକାର୍ଯ୍ୟ ଅତିଶୟ ରମଣୀୟ । ଲତା ଚିତ୍ରମାନଙ୍କୁ ଫୁଲଲତା, ନର୍ତ୍ତକୀଲତା, ପତ୍ରଲତା, ବନଲତା, ଏହି ଶ୍ରେଣୀ ଭାଗରେ ବିଭକ୍ତ କରାଯାଇ ପାରେ ।

ଏ ସମସ୍ତ ମୂର୍ତ୍ତି ଓ ପୁଷ୍ପପତ୍ର ଆଦି ଖୋଦନରେ ଉତ୍କଳୀୟ ଶିଳ୍ପିମାନେ ଯେ ବିଶିଷ୍ଟ ମାପ ବ୍ୟବହାର କରୁଥିଲେ ତାହାର ଯଥେଷ୍ଟ ପ୍ରମାଣ ଉତ୍କଳୀୟ ଶିଳ୍ପଗ୍ରନ୍ଥମାନଙ୍କରୁ ଦୃଷ୍ଟ ହୁଏ । ଏତେଏବ ଏ ସବୁ ପ୍ରତିକୃତି ସେମାନଙ୍କର ମନୋଇଚ୍ଛାମତେ ଖୋଦିତ ହୋଇ ନାହିଁ, ପ୍ରତ୍ୟେକଟିରେ ଗୋଟିଏ ନା ଗୋଟିଏ ବିଶିଷ୍ଟ ନିୟମ ଅବଲମ୍ବିତ ହୋଇଅଛି ।

ଓଡ଼ିଶାର—ବିଶେଷତଃ ଭୁବନେଶ୍ୱର ଓ ପୁରୀର ପ୍ରଧାନ ମନ୍ଦିରମାନଙ୍କରେ ଅନେକ ଅଶ୍ଳୀଳ ମୂର୍ତ୍ତି ଖୋଦିତ ହୋଇଅଛି । ଏ ସମସ୍ତ ଦେଖି କୌଣସି କୌଣସି ଲେଖକ ସ୍ଥିର କରିଅଛନ୍ତି ଯେ, ଓଡ଼ିଶାର ତଦାନୀନ୍ତନ ରୁଚି ସେହିପରି ଆଦିରସାତ୍ମକ ଥିବାରୁ ଏପରି ମୂର୍ତ୍ତିମାନ ଓଡ଼ିଶାର ମନ୍ଦିରମାନଙ୍କରେ ଖୋଦିତ ହୋଇଅଛି । ଓଡ଼ିଶାରେ ଶିଳ୍ପିମାନଙ୍କର ରୁଚି ଆଦିରସାତ୍ମକ ଥିବାର ସ୍ୱୀକାର କରିଗଲେ ମଧ ସେମାନେ ଯେ ଦେବମନ୍ଦିରରେ କେବଳ ଆପଣାର ଆଦିରସଲାଳସା ତୃପ୍ତି କରିବାକୁ ଅଶ୍ଳୀଳ ମୂର୍ତ୍ତି ସ୍ଥାପନ କରନ୍ତେ, ଏହା ଭ୍ରାନ୍ତ ଧାରଣା ।

